# ରାଣୀ ଦୁର୍ଗାବତୀ

ଶ୍ରୀଯୁକ୍ତ ନିତ୍ୟାନନ୍ଦ ବହ୍ୱଦାରଙ୍କ ଦ୍ୱାରା
ପ୍ରଣୀତ
ଓ
ଶ୍ରୀ ସୁରେଶଚନ୍ଦ୍ର ବହ୍ୱଦାର ବି. ଏ,
ସବ୍‌ରେଜିଷ୍ଟ୍ରାର, ଜଗତ୍‌ସିଂହପୁରଙ୍କ
ଅନୁକୂଲ୍ୟରେ
ପ୍ରକାଶିତ

ପ୍ରଥମ ସଂସ୍କରଣ

ମୂଲ୍ୟ ଟ ୫-୦୦

# ଉପହାର



ଶ୍ରୀଯୁକ୍ତ ________________________ଙ୍କ

କର କମଳରେ

ଉପହାର

ଅର୍ପିତ

ହେଲା ।

# ଶ୍ରଦ୍ଧାଞ୍ଜଳି



ଯେଉଁ ପ୍ରତିଭାଶାଳୀ କୃତୀ ସନ୍ତାନମାନେ ଜନ୍ମଗ୍ରହଣ କରି ଶୌର୍ଯ୍ୟ ବୀର୍ଯ୍ୟର ଲୀଳାସଭୂମି ସମ୍ବଲପୁର ଜନନୀର ମୁଖ ଉଜ୍ଜ୍ୱଳ କରି ଯାଇଅଛନ୍ତି, ସେମାନଙ୍କ ମଧ୍ୟରେ ସ୍ୱର୍ଗୀୟ ରାମପ୍ରସାଦ ବହିଦାର ଅନ୍ୟତମ । ସେ ବିଗତ ୨୨ ତାରିଖ ସେପ୍ଟେମ୍ବର ୧୮୭୮ ଖ୍ରୀଷ୍ଟାବ୍ଦରେ ସମ୍ବଲପୁରର ଏକ କୁଳୀନ କରଣକୁଳରେ ଜନ୍ମ-ଗ୍ରହଣ କରିଥିଲେ । ତାଙ୍କର ପିତା ସ୍ୱର୍ଗୀୟ ଗୋବିନ୍ଦ ବହିଦାର ସେତେବେଳେ ସମ୍ବଲପୁର ବନ୍ଦୋବସ୍ତ ବିଭାଗର ଜଣେ କର୍ମଚାରୀ ଥିଲେ । ଯେତେବେଳେ ✓ ରାମପ୍ରସାଦ ସପ୍ତ ବର୍ଷ ବୟସର ବାଳକ ମାତ୍ର, ସେତେବେଳେ ତାଙ୍କ ପିତା ସଂସାରର ସମସ୍ତ ବନ୍ଧନ ଛିନ୍ନ କରି ପରଲୋକ ଗମନ କଲେ; ସୁତରାଂ ପିତୃହୀନ ବାଳକର ସମସ୍ତ ଭାର ତାଙ୍କ ଜ୍ୟେଷ୍ଠଭ୍ରାତା ✓ ଜଗନ୍ନାଥ ବହିଦାରଙ୍କ ଉପରେ ନ୍ୟସ୍ତ ହୋଇଥିଲା । ଜ୍ୟେଷ୍ଠ ଭ୍ରାତାଙ୍କ ତତ୍ତ୍ୱାବଧାନରେ ତାଙ୍କର ଅଷ୍ଟମ ବର୍ଷ ବୟସରେ ବିଦ୍ୟାଶିକ୍ଷା ଆରମ୍ଭ ହେଲା । ଶୈଶବ ଅବସ୍ଥାରୁ ପୁସ୍ତକ ପ୍ରତି ✓ ରାମପ୍ରସାଦ ବହିଦାରଙ୍କ ଏକ ପ୍ରଗାଢ ମମତା ଥିଲା । ଶିଶୁ-ସୁଲଭ ସମସ୍ତ ପ୍ରକାର କ୍ରୀଡ଼ା କୌତୁକ ଅପେକ୍ଷା ନିର୍ଜନରେ ବସି ଖଣ୍ଡିଏ ପୁସ୍ତକ ସହିତ କ୍ରୀଡ଼ା କରିବା ଥିଲା ତାଙ୍କର ଆନନ୍ଦ—ଜୀବନର ତୃପ୍ତି । ସେହି ଅଭ୍ୟାସ ଫଳରେ ଛଅ ବର୍ଷ ମଧ୍ୟରେ ସେ ମାସିକ ୫ ୫୦ ବୃତ୍ତି ସହ ସି.ପି.ର ମିଡ଼ିଲ ସ୍କୁଲ ପରୀକ୍ଷାରେ ବଡ଼ କୃତିତ୍ୱର ସହିତ ପାସ କଲେ । ଏହି ପାଞ୍ଚ ଟଙ୍କାର ବୃତ୍ତିହିଁ ତାଙ୍କ ଭବିଷ୍ୟତ

ଶିକ୍ଷାର ପ୍ରଧାନ ସହାୟକ ହୋଇଥିଲା । ସେତେବେଳେ ଆଜି-
କାଲିକାର ଭଳି ବିଦ୍ୟାଶିକ୍ଷାର ସେପରି କିଛି ସୁବନ୍ଦୋବସ୍ତ ନ ଥିଲା ।
ତା' ପରି ସମାଜର କଠୋର ବ୍ୟବସ୍ଥାର ବେଷ୍ଟନୀ ଏପରି ଦୃଢ଼
ଥିଲା ଯେ, ସେହି ବେଷ୍ଟନୀ ଭେଦ କରି ବାହାରକୁ ଦୃଷ୍ଟି ପ୍ରସାରଣ
କରିବା କ୍ଷମତା କାହାର ନ ଥିଲା । ଏହିପରି କୁସଂସ୍କାର ବେଷ୍ଟନୀ
ମଧ୍ୟରେ ଆବଦ୍ଧ ରହି ତାଙ୍କୁ ତାଙ୍କର ୧୭ ବର୍ଷ ବୟଃକ୍ରମରେ
ଦୀକ୍ଷିତ କରିବା ପାଇଁ ବାଧ୍ୟ ହେବାକୁ ହୋଇଥିଲା । ତଥାପି ସେ
ଅଧ୍ୟୟନରୁ ବିରତ ନ ହୋଇ ଅଦ୍ଭୁତ ଉତ୍ସାହର ସହିତ ପଢ଼ିବାକୁ
ଲାଗିଲେ । ସେ ୧୮୮୭ ଖ୍ରୀଷ୍ଟାବ୍ଦରେ କଲିକତା ବିଶ୍ୱବିଦ୍ୟାଳୟର
ଏଣ୍ଟ୍ରାନ୍ସ ପରୀକ୍ଷାରେ ସସମ୍ମାନ ଉତ୍ତୀର୍ଣ୍ଣ ହୋଇଥିଲେ ।

ସେତେବେଳେ ପରିବାରର ସମସ୍ତ ପ୍ରକାର ଭାର ତାଙ୍କ
ଉପରକୁ ଧୀରେ ଧୀରେ ମାଡ଼ି ଆସିଲା । ଅଧ୍ୟୟନର ପ୍ରଗାଢ଼ ପ୍ରବୃତ୍ତି
ଥିଲେ ସୁଦ୍ଧା ତାଙ୍କର ଅସ୍ୱଚ୍ଛଳ ଅବସ୍ଥା ଚାକିରି ଅନ୍ୱେଷଣରେ ତାଙ୍କୁ
ବାଧ୍ୟ କଲା । ଏହି ସମୟରେ ନାନା ଅଭାବପୂର୍ଣ୍ଣ ସଂସାରର ନିଷ୍ଠୁର
ତାଡ଼ନାରେ ଜର୍ଜ୍ଜରିତ ହୋଇ ସୁଦ୍ଧା କିପରି ସେ ଆପଣା ଶୃଙ୍ଗରେ
ମୃତ୍ତିକା ଖନନ ପୂର୍ବକ ନିଜ ପ୍ରତିଭା ମନ୍ଦିର ନିର୍ମାଣ କରି ପାରି
ଥିଲେ, ତାହା ଟିକିଏ ଆଲୋଚନା କଲେ ହୃଦୟ ବିସ୍ମୟାଭିଭୂତ
ହୋଇ ପଡ଼େ । ତାଙ୍କର ଜ୍ଞାନପିପାସା ଅନ୍ୟ ଦିଗରେ ଚାକିରି
ଅନ୍ୱେଷଣର ଅବସର ନ ଦେଇ ଶିକ୍ଷାବିଭାଗ ପ୍ରତି ବଳେ ବଳେ
ଆକର୍ଷଣ କରି ନେଲା । ୧୮୮୭ ଖ୍ରୀଷ୍ଟାବ୍ଦରେ ସେ ପ୍ରଥମେ ମାସିକ
ଟ୧୫୯ ବେତନରେ ସ୍ଥାନୀୟ ଜିଲ୍ଲା ସ୍କୁଲର ୭ମ ସହକାରୀ ଶିକ୍ଷକ-
ରୂପେ ନିଯୁକ୍ତ ହେଲେ । ଶିକ୍ଷକତା ସଙ୍ଗେ ସଙ୍ଗେ ତାଙ୍କର ଅଧ୍ୟୟନ

ଆକାଙ୍କ୍ଷା ଅନ୍ତରେ ସତେଜ ହୋଇ ଉଠୁଥିଲେ ସୁଦ୍ଧା ସେତେବେଳର ପ୍ରାୟ ଗୃହ ପାଞ୍ଚୋଟି ଶିଶୁ ସନ୍ତାନପୂର୍ଣ୍ଣ ଅଭାବଗ୍ରସ୍ତ ପରିବାରର ଦାରୁଣ ଚିନ୍ତା ତାଙ୍କୁ ସମୟ ସମୟରେ ବଡ ବିବ୍ରତ କରି ପକାଉଥିଲା । ତଥାପି ଏକନିଷ୍ଠ ଅଧ୍ୟବସାୟୀ ୬ ରାମପ୍ରସାଦ କାତର ନ ହୋଇ ସ୍ୱୀୟ ଚେଷ୍ଟାକୁ ବଡ ଦୃଢ଼ଭାବରେ ଧାରଣ କରିଥିଲେ । ଫଳତଃ ସେ ୧୮୯୬ ଖ୍ରୀଷ୍ଟାବ୍ଦରେ ଏଫ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମାସିକ ଟ ୩୦୯ ବେତନରେ ହୋସଙ୍ଗାବାଦ୍‌କୁ ତୃତୀୟ ସହକାରୀ ଶିକ୍ଷକରୂପେ ପରିବର୍ତ୍ତିତ ହୋଇ ଗଲେ । ଏହି ସମୟରେ ସେ ବି. ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲେ । ସେଥିପାଇଁ ସେ ତିନି ମାସର ଅବକାଶ ନିମନ୍ତେ କର୍ତ୍ତୃପକ୍ଷଙ୍କୁ ଆବେଦନ କରିଥିଲେ ସୁଦ୍ଧା ବିନା ବେତନରେ ଛୁଟି ମଞ୍ଜୁର ହେବା କାରଣ ସେ ଅବକାଶର ଆଶା ତ୍ୟାଗ କରି ଅନ୍ତର କଠୋର ପରିଶ୍ରମର ଆଶ୍ରୟ ଗ୍ରହଣ କଲେ । ଏହି ସମୟରେ ତାଙ୍କର ପୁନର୍ବାର ସମ୍ବଲପୁର ଜିଲା ସ୍କୁଲକୁ ପରିବର୍ତ୍ତନ ହେଲା । ଏହି ସୁଯୋଗରେ ସେ ବି. ଏ. ପରୀକ୍ଷାରେ ଯୋଗ ଦେଇ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେଲେ । ସେତେବେଳେ ତାଙ୍କର ବେତନ ହେଲା ଟ ୩୫୯ ମାତ୍ର । ଏହି ସମୟରେ ତାଙ୍କ ଉପରେ ଅନେକ ପ୍ରକାର ଚିନ୍ତା ଆସି ପଡ଼ିଥିଲା । ସଂସାରର ଆର୍ଥିକ ଅନାଟନ—ତା’ପର ତାଙ୍କର ଅତି ପ୍ରିୟ ଜ୍ୟେଷ୍ଠପୁତ୍ରର ମୃତ୍ୟୁ, ତଥାପି ସେ ମ୍ରିୟମାଣ ନ ହୋଇ 'Let the dead past bury its dead'—ମୂଳମନ୍ତ୍ରରେ ଦୀକ୍ଷିତ ହୋଇ ପୁଣି ୧୯୦୩ ଖ୍ରୀଷ୍ଟାବ୍ଦରେ ବି. ଏଲ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେ ସମୟରେ ତାତ୍‌କାଳୀନ Inspector

General of Education C. P. Mr. Mouro ସାହେବ ସମ୍ବଲପୁର ଉଚ୍ଚ ଇଂରାଜୀ ସ୍କୁଲ ପରିଦର୍ଶନ କରିବାକୁ ଆସି ୰ରାମପ୍ରସାଦ ବହିଦାରଙ୍କ ଶିକ୍ଷାଦାନ ପ୍ରଣାଳୀ ଓ ଇଂରାଜୀ ଭାଷାରେ ଅଗାଧ ପାଣ୍ଡିତ୍ୟର ପରିଚୟ ପାଇ ଏ ଭଳି ଜଣେ ମନୀଷୀର ଏତେ ସ୍ୱଳ୍ପ ବେତନ ଜାଣି ବଡ଼ ଦୁଃଖ ପ୍ରକାଶ କରିଥିଲେ ଏବଂ ତାଙ୍କୁ ୧୯୦୪ ରେ ଏହି ସ୍କୁଲର Asst. Head Master ପଦରେ ନିଯୁକ୍ତ କରି ମାସିକ ଟ ୩୫୲ ବେତନରୁ ମାସିକ ଟ ୮୦୲ ବେତନକୁ ଉତ୍ତୀର୍ଣ୍ଣ କରିଦେଲେ ।

ସେତେବେଳେ ଓକାଲତି ଏକ ବଡ଼ ପ୍ରଶସ୍ତ ଓ ଅର୍ଥକରୀ ବ୍ୟବସାୟ ଥିଲା । ୰ ରାମପ୍ରସାଦଙ୍କ ଅନେକ ବନ୍ଧୁ ଶିକ୍ଷା ବିଭାଗ ତ୍ୟାଗ କରି ଓକାଲତି ବ୍ୟବସାୟ କରିବା ପାଇଁ ତାଙ୍କୁ ଅନେକ ଥର ପ୍ରବର୍ତ୍ତାଇ ଥିଲେ । କିନ୍ତୁ ଆଜନ୍ମ ଜ୍ଞାନପିପାସୁ ୰ ରାମପ୍ରସାଦ ଶିକ୍ଷା ବିଭାଗର ମମତା ତ୍ୟାଗ କରିବା ପାଇଁ ତାଙ୍କର ମନ ବଳିଲା ନାହିଁ । ଦଶ ଜଣଙ୍କ ଉପକାର ବ୍ରତରେ ବ୍ରତୀ ହେବା ଅପେକ୍ଷା ନିଜ ଆର୍ଥିକ ସଂସାର ସ୍ୱଚ୍ଛଳ କରିବା ପ୍ରବୃତ୍ତି ତାଙ୍କର ମୋଟେ ନ ଥିଲା । ତା’ ପରେ ୧୯୦୬ ଖ୍ରୀଷ୍ଟାବ୍ଦରେ କଳାହାଣ୍ଡି ଷ୍ଟେଟର ବର୍ତ୍ତମାନ ମହାରାଜାଙ୍କ ପାଇଁ ଏକ Guardian Tutor ଆବଶ୍ୟକ ହେବାରୁ ସେ କର୍ତ୍ତୃପକ୍ଷଙ୍କଦ୍ୱାରା ମନୋନୀତ ହୋଇ ମାସିକ ଟ ୧୫୦୲ ବେତନରେ ସେଠାକୁ ପ୍ରେରିତ ହୋଇଥିଲେ । କିଛିକାଳ ସେଠାରେ ଅବସ୍ଥାନ ପରେ ସମ୍ବଲପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ୰ହରପ୍ରସାଦ ଦାସ ୬ ମାସର ଅବକାଶ ନେବା ହେତୁ ସେ ସେହି କାମକୁ ପୁଣି ଆନୀତ ହେଲେ । ପ୍ରଧାନ ଶିକ୍ଷକ

ରୂପେ ଅବସ୍ଥାନ କରି ଅଳ୍ପ ସମୟ ମଧ୍ୟରେ ସେ ବିଦ୍ୟାଳୟର ସର୍ବଶ୍ରେଷ୍ଠ ଉନ୍ନତି ଦେଖାଇଥିଲେ । ସେତେବେଳେ ଏଣ୍ଟ୍ରାନ୍ସ କ୍ଲାସରେ ଅଧ୍ୟୟନ କରୁଥିବା ୬ ଜଣ ମାତ୍ର ଛାତ୍ର ପ୍ରତି ସେ ଏତେଦୂର ଯତ୍ନ ନେଇଥିଲେ ଯେ ପ୍ରବେଶିକା ପରୀକ୍ଷାରେ ସେହି ଛଅ ଜଣ ମଧ୍ୟରୁ ପାଞ୍ଚ ଜଣ ପ୍ରଥମ ଶ୍ରେଣୀ ଓ ଜଣେ ଦ୍ୱିତୀୟ ଶ୍ରେଣୀରେ ପାସ କରିଥିଲେ ।

ତାଙ୍କ ଜୀବନରେ ପ୍ରଗାଢ଼ ଅଧ୍ୟବସାୟ, ନିର୍ଭୀକତା ଓ ସ୍ପଷ୍ଟବାଦିତା ଥିଲା ପ୍ରଧାନ ଆଦର୍ଶ । ଏହି ପରାଧୀନ ଦେଶରେ ତାଙ୍କର ସେହି ନିର୍ଭୀକତା ଓ ସ୍ପଷ୍ଟବାଦିତା ହେତୁ ତାଙ୍କୁ ନାନା ଅତ୍ୟାଚାର ସହ୍ୟ କରିବାକୁ ପଡ଼ିଥିଲା । ସେତେବେଳେ ଓଡ଼ିଶାରେ ବଙ୍ଗ ପ୍ରଭାବ ପ୍ରଖର ଭାବରେ ମାଡ଼ି ଆସୁଥିଲା । ଓଡ଼ିଆ ସନ୍ତାନମାନେ ଚାକିରୀ କ୍ଷେତ୍ରରେ ବଡ଼ ଅବହେଳିତ ହେଉଥିଲେ । ସ୍ପଷ୍ଟବାଦୀ ୰ରାମପ୍ରସାଦ ସେ ସବୁ ସହ୍ୟ କରି ନ ପାରି ଥରେ ଥରେ ଏହି ପ୍ରସଙ୍ଗରେ ବଡ଼ ନିର୍ଭୟରେ ତୀବ୍ର ମତାମତ ପ୍ରକାଶ କରୁଥିଲେ । ତାହାରି ଫଳରେ ତାଙ୍କୁ ତାଙ୍କ ବିଭାଗୀୟ ଉଚ୍ଚପଦସ୍ଥ କେତେକଙ୍କର ଚକ୍ଷୁଶୂଳ ହେବାକୁ ପଡ଼ିଥିଲା । ଦୁଃଖର ବିଷୟ ପ୍ରବାସୀ ପ୍ରଭାବରେ ପ୍ରଭାବିତ ହୋଇ କେତେକ ସ୍ୱଦେଶୀୟ ବିଶିଷ୍ଟ ବ୍ୟକ୍ତି ମଧ୍ୟ ୰ରାମପ୍ରସାଦ ବହିଦାରଙ୍କ ବିରୁଦ୍ଧରେ ଦଣ୍ଡାୟମାନ ହେବାକୁ ତିଳେ ସୁଦ୍ଧା କୁଣ୍ଠାବୋଧ କରି ନ ଥିଲେ । ସେମାନଙ୍କ ସମବେତ ଚେଷ୍ଟାଦ୍ୱାରା ବିଭୀଷଣ ନୀତିର କୁଚକ୍ରରେ ପତିତ ହୋଇ ତାଙ୍କୁ ଅନେକାନେକ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା । ନାନାପ୍ରକାର ଅଭିଯୋଗ ତାଙ୍କ ବିରୁଦ୍ଧରେ ଉପସ୍ଥାପିତ

କରା ହୋଇଥିଲା । ଅନ୍ୟାନ୍ୟ ଶିକ୍ଷକଙ୍କ ପରି ସେ 2nd Grade Teacher's Training ରେ ପାସ କରିଥିଲେ ସୁଦ୍ଧା ତାଙ୍କୁ ବି, ଟି. ଟ୍ରେନିଂରେ ଯୋଗ ଦେବା ପାଇଁ ଆଦେଶ ହେଲା । କର୍ତ୍ତୃପକ୍ଷଙ୍କ ଆଦେଶରେ ବି. ଟି. ଟ୍ରେନିଂ ପାଇଁ ସେ କଲିକତା ଯାତ୍ରା କଲେ । ସେ ସମୟରେ ତାଙ୍କର ମାସିକ ବେତନ ଥିଲା ଟ୧୦୦୯ ମାତ୍ର । ଟ୍ରେନିଂ କ୍ଷେତ୍ରରେ ଯୋଗ ଦେବାର ପ୍ରାୟ ଦେଢ଼ ମାସ ପରେ ପୁଣି ଆଦେଶ ହେଲା ଯେ ସେ ତାଙ୍କ ବେତନର ଅର୍ଦ୍ଧାଂଶ ଟ୫୦୯ ମାତ୍ର ପାଇବେ । ଏହି ବ୍ୟବସ୍ଥା ତାଙ୍କୁ ବିଶେଷ ଭାବରେ ବାଧିଥିଲା । ଏକଦାଗରେ ବିଶାଳ ପରିବାରର ଭରଣପୋଷଣ—ଅନ୍ୟ ଦାଗରେ କଲିକତା ନଗରୀରେ ଅଧିକା ଖର୍ଚ୍ଚ । କର୍ତ୍ତୃପକ୍ଷଙ୍କୁ ନାନା-ଭାବରେ ଆବେଦନ ନିବେଦନ କରି ସୁଦ୍ଧା ଫଳହୀନ ଅବସ୍ଥାରେ ଏହି କଠୋର ବ୍ୟବସ୍ଥା ତାଙ୍କୁ ସହ୍ୟ କରିବାକୁ ପଡ଼ିଥିଲା । ପୁଣି ଟ୍ରେନିଂ ଅବସ୍ଥାନ କାଳରେ ତାଙ୍କ ବିରୁଦ୍ଧରେ ଆରୋପିତ ନାନା ଅଭିଯୋଗରେ ଆତ୍ମପକ୍ଷ ସମର୍ଥନ ପାଇଁ ଘନ ଘନ ଆହ୍ୱାନ ତାଙ୍କୁ ବିବ୍ରତ କରୁଥିଲା । ଏହିପରି ନାନା ମନସ୍ତାପ ବହନପୂର୍ବକ ସେ ଟ୍ରେନିଂ ଜୀବନ ନିର୍ବାହ କରିବାକୁ ଲାଗିଲେ । ସେତେବେଳେ ତାଙ୍କର ମାନସିକ ଓ ଶାରୀରିକ ଅବସ୍ଥା ବଡ଼ ଶୋଚନୀୟ ହୋଇ ପଡ଼ିଥିଲା । ହାୟ !

"ଶୁଷ୍କ ବନ୍ଧ୍ୟ ଯଶ ସଙ୍ଗେ ଅର୍ଦ୍ଧାଶନ,
ପ୍ରତିଭାରି ପରି ଲଲାଟ ଲେଖନ ।"

ତଥାପି ବିଦ୍ୱାନ୍ ୰ରାମପ୍ରସାଦ ବହିଦାର ବି. ଟି. ଟ୍ରେନିଂ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । କେବଳ ଉତ୍ତୀର୍ଣ୍ଣ ନୁହେ—ତାଙ୍କ

କଲେଜର ଦ୍ୱିତୀୟ ସ୍ଥାନ ଅଧିକାର କରି ସମଗ୍ର Calcutta University ରେ ତୃତୀୟ ସ୍ଥାନ ଅଧିକାର କରତଃ ତାଙ୍କ ପାଣ୍ଡିତ୍ୟର ଗଭୀର ପରିଚୟ ପ୍ରଦାନ କରିଥିଲେ । ତଥାପି କର୍ତ୍ତୃପକ୍ଷଙ୍କ ସୁଦୃଷ୍ଟି ତାଙ୍କ ଉପରେ ପତିତ ହୋଇ ପାରି ନ ଥିଲା । ତାଙ୍କ ପ୍ରାପ୍ୟ ମର୍ଯ୍ୟାଦାରୁ ବଞ୍ଚିତ ହୋଇ ସେ ଇତସ୍ତତ କେବଳ ଘନ ଘନ ପରିବର୍ତ୍ତିତ ହେବାକୁ ଲଗିଲେ । ନାନା ଦଗରେ ନାନା ଭାବରେ ଅବହେଳିତ ହୋଇ ମୁଦ୍ଧା ପ୍ରତିଭା ବାପଣିରେ ଉତ୍ତପ୍ତ ସ୍ୱର୍ଣ୍ଣଖଣ୍ଡ ପରି ତାଙ୍କର ଜ୍ଞାନମହିମା ଅଧିକର ଫୁଟି ଉଠିଥିଲା । ଶେଷ ଜୀବନରେ ସେ ପୁଣି ସମ୍ବଲପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟକୁ ପରିବର୍ତ୍ତିତ ହୋଇ କର୍ତ୍ତୃପକ୍ଷଙ୍କ ଦ୍ୱାରା ନାନା ପ୍ରଶଂସା ନିଦର୍ଶନ ଦେଇ ପେନ୍‌ସନ୍ ସହ ସସମ୍ମାନ ଅବସର ଗ୍ରହଣ କରିଥିଲେ ।

ତାଙ୍କ ହସ୍ତଲିଖିତ କେତେକ ପ୍ରବନ୍ଧ ଓ ଗୋଟି ପଦ୍ୟାଦି ବର୍ତ୍ତମାନ ଦେଖିବାକୁ ମିଳେ । ସେହି କେତେକ ଲେଖା ମଧ୍ୟରେ କବିତ୍ୱପୂର୍ଣ୍ଣ ଇଂରାଜୀ ଭାଷାରେ ଯେଉଁ ପ୍ରଗାଢ଼ ପାଣ୍ଡିତ୍ୟ ପ୍ରଦର୍ଶିତ ହୋଇଅଛି – ତାହାହିଁ ତାଙ୍କର ଭାଷାଜ୍ଞାନର ପରିଚାୟକ । କେବଳ ଇଂରାଜୀ ଭାଷାରେ ତାଙ୍କର ଯେ ପାଣ୍ଡିତ୍ୟ ଥିଲା ତାହା ନୁହେ— ଜୀବନର ପ୍ରଭାତରୁ ଅର୍ଥାତ୍ ପ୍ରାୟ ୨୨ବର୍ଷ ବୟସରୁ ସେ ମୂଳ ଦର୍ଶନ (ବେଦାନ୍ତ) ଅଧ୍ୟୟନ କରିଥିଲେ । ସେହି ସମୟରୁ ଆରମ୍ଭ କରି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଭଗବଦ୍‌ଗୀତା ଏହାଙ୍କର ଏକମାତ୍ର ଆଦରଣୀୟ ବସ୍ତୁ ଥିଲା । ଏପରି କି ଅଠର ଅଧ୍ୟାୟ ପର୍ଯ୍ୟନ୍ତ ପୁସ୍ତକର ବିନା ସାହାଯ୍ୟରେ ଏବଂ ଅନାୟାସରେ ଆବୃତ୍ତି କରି ପାରୁ ଥିଲେ । ନଦୀସ୍ନାନରୁ ଫେରୁଥିବା ବେଳେ ତାଙ୍କର ସେହି

ସୌମ୍ୟମୂର୍ତ୍ତି ଏବଂ ଭକ୍ତି ତଦ୍‌ଗତଭାବରେ ସଂସ୍କୃତ ଶ୍ଳୋକର ଉଚ୍ଚାରଣ ଏବେ ସୁଦ୍ଧା ଅନେକଙ୍କର ସ୍ମୃତିପଟରେ ଅଙ୍କିତ ହୋଇ ରହିଅଛି । ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଯଥେଷ୍ଟ ଅନୁରାଗ ଥିଲା । ଅନ୍ୟାନ୍ୟ ଭାଷାର ବହୁ ଗ୍ରନ୍ଥାବଳୀ ସହ ତାତ୍କାଳୀନ ଓଡ଼ିଆ ପ୍ରକାଶିତ ପ୍ରାୟ ସମସ୍ତ ପ୍ରକାର ଗ୍ରନ୍ଥ ତାଙ୍କର ପୁସ୍ତକାଗାର ମଣ୍ଡନ କରିଥିଲା । ଈଶ୍ୱର ସମ୍ବନ୍ଧୀୟ ଅନେକଗୁଡ଼ିଏ ମଧୁର ଓ ଭାବପୂର୍ଣ୍ଣ କବିତା ମଧ୍ୟ ସେ ରଚନା କରି ଯାଇଅଛନ୍ତି । ତାଙ୍କର ଇଂରାଜୀ ରଚନା ସହ ସେ ସବୁ ବର୍ତ୍ତମାନ ଅପ୍ରକାଶିତ ଭାବରେ ରହିଅଛି । ସେ ବିଗତ ୧୯୬୭ ଖ୍ରୀଷ୍ଟାବ୍ଦ ଜୁନ୍ ୭ ତାରିଖରେ ଇହ ସଂସାର ତ୍ୟାଗ କରି ତାଙ୍କ ମାତୃଭୂମି କୋଳରେ ଚିରଶଯ୍ୟା ରଚନା କରିଥିଲେ । ପରିତାପର ବିଷୟ, ଏହିପରି ଏକ କୃତବିଦ୍ୟ ମନୀଷୀ ସନ୍ତାନକୁ ସମ୍ବଲପୁର ଚିହ୍ନି ସୁଦ୍ଧା ଚିହ୍ନି ପାରି ନାହିଁ ।

> "ମାନି ହେଲା ଯେହୁ ତୁମ୍ଭର ପ୍ରସୂତ,
> ନ ଚିହ୍ନିଲ ସେତ ନିଜର ବିଭୂତି !
>
> × × × ×
>
> ତୁମ୍ଭଘର ଜ୍ଞାନ ତରୁ ମଉଳିଲା !
> ଏହା ଦେଖିବାକୁ ବିହି ଲେଖିଥିଲା ।"

ସମ୍ବଲପୁର ଜନନୀର ନିର୍ଭିକ କୃତି ସନ୍ତାନ ୬ ରାମପ୍ରସାଦ ବରିହାରଙ୍କ ପୁଣ୍ୟପ୍ଳୁତ ଜୀବନର ଅନେକ ଘଟଣା ବହୁଳ ଶିକ୍ଷା-ପ୍ରଦର୍ଶ. ତାଙ୍କର ସେହି ମହତୋ ମହୀୟାନ୍ ଜୀବନର ସମ୍ପୂର୍ଣ୍ଣ ଆଲୋଚନା କରି ପାରିବା ଭଳି ଶକ୍ତି ମୋର ନାହିଁ । ଅତି ସଂକ୍ଷିପ୍ତ ଭାବରେ ତାଙ୍କ ଜୀବନର ସାମାନ୍ୟ କେତେକ ଘଟଣା ମାତ୍ର ଏଥିରେ

ଉଲ୍ଲେଖ କଲି । ତାଙ୍କର ଦେବପ୍ରତିମ ନୈତିକ ଜୀବନରେ ମୁଗ୍ଧ ହୋଇ ଏହି "ରାଣୀ ଦୁର୍ଗାବତୀ" ନାମକ ବର୍ଣ୍ଣନା ଖଣ୍ଡିକ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଅର୍ପଣ ପୂର୍ବକ ଆପଣାକୁ ଗୌରବାନ୍ୱିତ ମନେ କରୁଅଛୁ । ଇତି ।

| | |
|---|---|
| ମହାନ୍ତିପଡ଼ା<br>ସମ୍ବଲପୁର<br>ତା ୧୦ ୭-୧୯୩୫ | ବିନୀତ<br>ଶ୍ରୀ ନିତ୍ୟାନନ୍ଦ ବହିଦାର |

# ଆତ୍ମକଥା

କାବ୍ୟରୂପେ ପ୍ରଥମରେ ଗ୍ରହଣ କରିବାକୁ ଯାଇ କାବ୍ୟ-ପୀୟୂଷ-ପାୟୀ ସୁଧୀ ପାଠକବୃନ୍ଦ ଶେଷରେ ବୋଧ ହୁଏ ନିରାଶ ହୋଇ ପଡ଼ିବେ । ଏଥିରେ କାବ୍ୟର କବିତ୍ୱ ନାହିଁ—ଭାଷାର ମାଧୁର୍ଯ୍ୟ କିମ୍ବା ଭାବର ଗାମ୍ଭୀର୍ଯ୍ୟ ନାହିଁ—ଅଛି କେବଳ ଭାରତର ବୀରଲଲନା ଇତିବୃତ୍ତର ସାମାନ୍ୟ ଖଣ୍ଡିଏ ବର୍ଣ୍ଣନା ମାତ୍ର । ଛାତ୍ର-ଜୀବନରେ ରାଣୀ ଦୁର୍ଗାବତୀଙ୍କ ବୀରଜୀବନବୃତ୍ତାନ୍ତ ପାଠ କରି ତହିଁରେ ଅନୁପ୍ରାଣିତ ହୋଇ ଏହି ବର୍ଣ୍ଣନା ଖଣ୍ଡିକ ଲିଖିତ । ଏହା କୌଣସି ଶକ୍ତିଶାଳୀ ଲେଖନୀ ହସ୍ତରେ ପଡ଼ିଥିଲେ ବର୍ଣ୍ଣିତ ବୀରାଙ୍ଗନା ପ୍ରତି ହୁଏତ ଉଚିତ ସମ୍ମାନ ପ୍ରଦର୍ଶିତ ହୋଇ ପାରିଥାନ୍ତା; କିନ୍ତୁ ତାହା ଦୁର୍ବଳ ଲେଖନୀ ହସ୍ତରେ ପତିତ ହୋଇ ସଂପ୍ରତି ଅଶାର ବିଡ଼ମ୍ବନାରେ ମାତ୍ର ପରିଣତ ହୋଇଅଛି । ଯାହା ହେଉ, ମୋର ଓଡ଼ିଆ ଭଉଣୀମାନେ ଯଦି ଏହି ବର୍ଣ୍ଣନା ଖଣ୍ଡିକ ପାଠ କରି ହୃଦୟରେ କିଞ୍ଚିତ ଗର୍ବ ଅନୁଭବ କରନ୍ତି, ତେବେ ତାହାହିଁ ମୋ' ପରିଶ୍ରମର ଯଥେଷ୍ଟ ପୁରସ୍କାର ବୋଲି ମନେ କରିବି ।

ଏହି ପୁସ୍ତକ ପ୍ରଣୟନ ଓ ପ୍ରକାଶନରେ ମୋର ସହପାଠୀ ବାବୁ ବାସୁଦେବ ପରିଚ୍ଛା ବାକ୍ୟଭୂଷଣ, ସୁହୃଦ୍ ବାବୁ ପଣ୍ଡିତ ଖଣ୍ଡୁଆଳ ଏବଂ ମୋର ହିତାକାଙ୍କ୍ଷୀ ବନ୍ଧୁ ବାବୁ ହରିଶ୍ଚନ୍ଦ୍ର ବଡ଼ଦାର, ବି. ଏଲ. ମୋତେ ଯଥେଷ୍ଟ ଉତ୍ସାହିତ କରିଅଛନ୍ତି । ସମ୍ବଲପୁରର ଉଦୀୟମାନ ଚିତ୍ରଶିଳ୍ପୀ ବାବୁ ବଳରାମ ବରିହା ଏଥିରେ କେତୋଟି ଚିତ୍ର ଅଙ୍କିତ କରି ପୁସ୍ତକଟିର ଶ୍ରୀ ସମ୍ପାଦନ କରିଅଛନ୍ତି । ସେଥିପାଇଁ ଉପର୍ଯ୍ୟୁକ୍ତ ବନ୍ଧୁମାନଙ୍କଠାରେ ମୁଁ ଆନ୍ତରିକ କୃତଜ୍ଞ ।

| ସମ୍ବଲପୁର<br>ତା ୧୦।୭।୧୯୩୫ | } | ବିନୀତ<br>ପ୍ରଣେତା |
|---|---|---|

# ରାଣୀ ଦୁର୍ଗାବତୀ

## ପ୍ରଥମ ତରଙ୍ଗ

**ପା**ରଧି ବିହାରେ ଦିନେ ରାଜସୁତା
ତଟିନୀ ତୀର-କାନନେ,
ବେନି ସଖୀ ସହ ଭ୍ରମୁଥିଲ ଧୀରେ
ବନ ମୃଗ ଅନ୍ୱେଷଣେ ।
ଅତି ରମଣୀୟ ସେ ବନଧରଣୀ
ଜଗତେ କାହିଁ ଉପମା,
ଜଳେ ସ୍ଥଳେ ବ୍ୟୋମେ ଫୁଟି ଉଠୁଥିଲା
ନନ୍ଦନ-ନବ-ସୁଷମା ।

# ରାଣୀ ଦୁର୍ଗାବତୀ

ସଞ୍ଚ ଘଞ୍ଚ ବୃକ୍ଷ ପତର ମଧ୍ୟ ଲେ
ତପନ-ତପତ-କର,
ଭେଦ ଠାବେ ଠାବେ ରଞ୍ଜି ଦେଇଥିଲା
ଅରଣ୍ୟ ପୁଷ୍ପନିକର ।
କେଉଁ ସ୍ଥାନ ଅବା ତରୁ ଲତା ପୁଞ୍ଜେ
ଦୁର୍ଗମ ନିବିଡ଼ତମ,
ରବିତାପ ତହିଁ ପ୍ରବେଶି ନ ପାର
ଦିଶୁଥିଲା ନିଶି ସମ ।
କେବେ କେବେ ଭୀମ ଶିଖରୀ ମସ୍ତକେ
କେବେ ନିର୍ଝରଣୀ-ତୀରେ,
କେବେ ଅବା ନବ ଦୂର୍ବାଦଳ ପରେ
ଚରୁଛି ନନ୍ଦନୀ ଧୀରେ ।
ବହୁଛି ଉଚ୍ଛ୍ୱାସ— ତଟିନୀ ପ୍ଲାବି ଲେ
ଲଳନା ହୃଦୟକ୍ଷେତ୍ର,
ହର୍ଷ ଅଶ୍ରୁ ଫୁଟି ସକଳ ଆନନେ
ଉଜ୍ଜ୍ୱଳ ଦିଶଇ ନେତ୍ର ।
ନାନା ଜାତି ବନ— କୁରଙ୍ଗ ବରାହ
ସଂହାରି ଅଳପ କ୍ଷଣେ,
ପ୍ରବେଶିଲେ ପରେ ଶୋଭାମୟ ଏକ
ନିବିଡ଼ ନିକୁଞ୍ଜ ବନେ ।

# ପ୍ରଥମ ତରଙ୍ଗ

ଅପୂର୍ବ ଶ୍ୟାମଳ ସୁଷମା ସମ୍ପଦେ
ରମଣୀୟ ଏହି ସ୍ଥଳ,
ନବ ପଲ୍ଲବିତ ମଞ୍ଜୁଳ ପଲ୍ଲବେ
ଶୋଭଇ ପାଦପଦଳ ।
ନବ ସୁକୁମାରୀ ଶିଆଳୀ ଲତିକା
ଛନ୍ଦି ତରୁ ଅପଘନ,
ଶୋଭନ୍ତି ଯଥା ଲୋ ଭରତା ଚରଣେ
ପ୍ରେମିକା ଛଇଲାଗଣ ।
ଊର୍ଦ୍ଧ୍ୱରେ ଶୋଭଇ ଚନ୍ଦୁଆ ପରି ଲୋ
ଘନ ପଲ୍ଲବ-ମଣ୍ଡପ,
ସ୍ଥାନେ ସ୍ଥାନେ ପୁଣି ଲମ୍ବିଛି ଯତନେ
ଅଲୋକ-ସ୍ତମ୍ଭ ଅତପ ।
ଫୁଲ-ଫଳ-ଭରା ଶୀତଳ ମଣ୍ଡପ
ତଳେ ହୋଇଅଛି ବଛା,
ଅତି ସୁକୁମାର ଘନ ଦୂର୍ବାଦଳ
ଶ୍ୟାମଳ ନବ ଗାଲିଚ୍ଚ ।
ଖରତାପେ ତାପି ବନଧରଣୀ ଲୋ
କମଳିନୀ ପ୍ରାଣଧନ,
ହୁତାଶନ ତେଜେ ଧୀରେ ଧୀରେ ଅସି
ମଣ୍ଡିଲେ ମଧ୍ୟ ଗଗନ ।

# ରାଣୀ ଦୁର୍ଗାବତୀ

ନୀରବ ନିଶ୍ଚଳ ନିକୁଞ୍ଜ କାନନ
ପତ୍ରଟିଏ ହଲୁ ନାହିଁ,
ଆତପ ସନ୍ତାପେ ସନ୍ତାପିତ ବନ—
କୁରଙ୍ଗ ରାବଇ କାହିଁ ।
ସୁଶୀତଳ ବୃକ୍ଷ ରମଣୀୟ ସ୍ଥଳେ
କ୍ଷଣିକ ବିଶ୍ରାମ ପାଇଁ,
ବେନି ସଖୀ ସହ ଅଶ୍ୱପୃଷ୍ଠୁ ଜେମା
ଆସିଲା ଧୀରେ ଓହ୍ଲାଇ ।
ନାନା ଜାତି ଫଳ ଆହରି ଅରଣ୍ୟ
ଜେମା ସହଚରୀଗଣ,
ଡାଲା ମଧ୍ୟେ ଭରି ଜେମା ପଦେ କଲେ
ଉପହାର ଅରପଣ ।
ପକ୍ୱ ଫଳ ମଧ୍ୟୁ କେତେ କଳାବତୀ
ଅରପି ସଜନୀ କରେ,
ହାସ୍ୟରୋଳେ ନାନା ଗଳପ ଅରମ୍ଭି
ଭୋଜନ କଲେ ଆଦରେ ।
ଏକାଳେ ସହସା ଏ କି ଆଚମ୍ବିତ
ବିଜନ ବନ କମ୍ପାଇ,
ଆସିଲା ଦୁର୍ଦ୍ଧାନ୍ତ କେଶରୀ କୁରଙ୍ଗ
ପଶ୍ଚାତେ ଖରେ ଗୋଡ଼ାଇ ।

## ପ୍ରଥମ ତରଙ୍ଗ

ପରାଣ ବିକଳେ     ପୁଚ୍ଛ ସପଟାଇ
କେଶରୀ ଧାବନ ଭୟେ,
ଲମ୍ବ ଖୁର ପଦେ     ଛନଛନେ ମୃଗ
ପଳାଉଥିଲା ଅଥୟେ ।
ପୁଚ୍ଛ ଟେକି ସିଂହ     ଝାମ୍ପୁଥିଲା କ୍ରୋଧ-
ଜର୍ଜରିତ ଅପଘନେ,
ଶିହରି ଉଠିଲେ     ସଖୀ ସେ' କେଶରୀ
ଭୟଙ୍କର ଆକ୍ରମଣେ ।
ନୟନ ପଲକେ     ଧାଇଁଲା ଜେମା ଲୋ
ଗଗନ-ଲାଢକା ପରି,
ଉଭା ହେଲା ଖରେ     କେଶରୀ ସମ୍ମୁଖେ
ଶାଣିତ ବଲ୍ଲମ ଧରି ।
କେଡ଼େ ବେଗେ ପୁଣି     ବୁଲାଇ ବଲ୍ଲମ
କେଶରୀ ଲଲାଟପଟେ,
ପିଟିଲା ସବେଗେ     ପଡ଼ିଲା କେଶରୀ
ହୁଙ୍କାର ଛାଡ଼ି ବିକଟେ ।
କେଶରୀ ପଡ଼ନ୍ତେ     ଭୟତ୍ରସ୍ତ ମୃଗ
ବେକ ଭାଙ୍ଗି ପଛେ ଚାହିଁ,
ଛଳଛଳ ନେତ୍ରେ     ଗହନ ବିପିନେ
ଚଞ୍ଚଳେ ପଶିଲା ଯାଇ ।

# ରାଣୀ ଦୁର୍ଗାବତୀ

ଭୀମପରାକ୍ରମ ଦୁର୍ଦ୍ଦାନ୍ତ କେଶରୀ
ସଂହାର ଅଳସ କ୍ଷଣେ,
ଦରହାସ ମୁଖେ ରାଜେନ୍ଦ୍ରତନୟା
ମିଳିଲା ସଖୀ ଗହଣେ ।
ଘର୍ମ ବିନ୍ଦୁ ବିନ୍ଦୁ ପ୍ରସ୍ଫୁଟିତ ଯେମା
ସରୋଜ ମୁହଁକୁ ଧରି,
ଦରବିଗଳିତ କର୍ମିରେ ସଖୀଏ
ପୁଚ୍ଛିଲେ ଆଗ୍ରହଭରେ ।
"ଧନ୍ୟ ଲୋ ସୁନ୍ଦରି ! ସତେ କି ସଙ୍ଗାତ
ତୁ ଅଟୁ ରାଜନନ୍ଦିନୀ,
ନ ଲଗେ ପରତେ ହୋଇଥିବୁ ଅବା
ମହିଷାସୁରମର୍ଦ୍ଦିନୀ ।
ଅତି ଶୈଶବରୁ ବିଳାସ କୋଳେ ଲୋ
ହୋଇଛୁ ସୁଖେ ପାଳିତ,
ବଲ୍ଲମ ଚାଳନା କଠୋର ବ୍ୟାୟାମ
କରି ନାହୁଁ ତ କାହିଁତ ।
କାହୁଁ ଜାଣିଲୁ ତୁ ଅସ୍ତ୍ର ଶସ୍ତ୍ର ଶିକ୍ଷା
ସମରର କଉଶଳ,
କିଏ ଦେଲା ପୁଣି ଅବଳା ଶରୀରେ
ଅମାନୁଷୀ ଏତେ ବଳ ।"

# ପ୍ରଥମ ତରଙ୍ଗ

ସଖୀମୁଖେ ନିଜ ବଳ ପରଶଂସା
ଶୁଣି ରାଜଜେମା ଧୀରେ,
ରକ୍ତରାଗରଞ୍ଜା ମୁଖ ନୁଆଇଁ ଲୋ
ବୋଇଲ୍ଲ ଲଳିତ ଗିରେ ।
"ଅରାତି ଚମକ ବିଜୟ କେତନ
ଉଡ଼େ ଯାର ଫରଫର,
ଯା' ନାମ ଶ୍ରବଣେ ଦୁର୍ଜୟ ଶତ୍ରୁର
ବକ୍ଷ ହୁଏ ଥରହର ।
ତା' ତନୟା ପକ୍ଷେ ସାମାନ୍ୟ କେଶରୀ
ନୁହଇ ତ ବଡ଼ କଥା,
ବାଲ୍ଲ କୃପାବଳେ ଶତ କେଶରୀର
ଚୂରି ପାରଇ ଲୋ ମଥା ।
ଅବଳା ଶରୀରେ ଏ ସାମାନ୍ୟ ବଳ
ନୁହଇ ତ ଅସମ୍ଭବ,
ଅପରୂପ ତେଜେ କେ ଅବା ରଚିଛି
ଗଗନେ ଧନୁ-ବାସବ ।
ଏହୁ ଯେ ପଡ଼ିଛି ମୃତ ସିଂହ ସଖୀ
ସର୍ବଦା ଥାଏ ଏ' ବନେ,
କଏ ଦେଲ ତାକୁ ବଳ କଉଶଳ
ଶତ୍ରୁବକ୍ଷ ବିଦାରଣେ ।

# ରାଣୀ ଦୁର୍ଗାବତୀ

ଯା' ଆଦେଶେ ରବି ପ୍ରଖର କିରଣେ
ଜଗତ ଦିଏ ରଞ୍ଜାଇ,
ସେହି ଏକା ମୋତେ ଦେଇଛନ୍ତି ବଳ
ବିଭୁ ଜଗତର ସାଇଁ ।"
କେମାମୁଖୁଁ ସଖୀ ଏତକ ଶୁଣି ଲେ
ପୁଲକାଇ ଅପଘନ,
ସ୍ନେହ ଗଦଗଦେ କେମା ଶିରେ କଲେ
ପରଶଂସା ବରଷଣ ।
ବଲ୍ମଧାରଣୀ ରାଜସୁତା ବସି
ମୃତ କେଶରୀର ଅଙ୍ଗେ,
ତରୁ ଛାୟାତଳେ ବେନି ସଖୀ ସହ
ବିଶ୍ରାମ ବହିଲେ ରଙ୍ଗେ ।
ଏକାଳେ ଏ କିସ ସେହି ମୃଗ ପୁଣି
ଅକସ୍ମାତ କେମା ଅଗ୍ରେ,
ଧନୁଧାରୀ ଏକ ଯୁବକ ଧାବନେ
ପଲାଉଛନ୍ତି ତହୁଁ ବ୍ୟଗ୍ରେ ।
ଧାବମାନ ମୃଗ ପଛେ ଅଶ୍ୱ ହେଇଁ
ନିକଟୁ ନିକଟତର,
ସନ୍ନିକଟ ମୃଗ ଦେଖି ଯୋଖିଥିଲା
ଶରାସନେ ଯୁବା ଶର ।



"ରକ୍ଷ ରକ୍ଷ" ଶବ୍ଦେ ଚମକି ସୁବାହୁ
ଦେଖିଲା କହୁଞ୍ଜ ବଦନ,

ପୃ ୯ ସ୍ତ୍ରା

# ପ୍ରଥମ ତରଙ୍ଗ

"ରହ ରହ" ଶବ୍ଦେ ଚମକି ଯୁବକ
ଦେଖିଲା ନିକୁଞ୍ଜ ବନେ,
ମୃଗୟାର ବେଶେ ଭଗ୍ନ ବନଦେବୀ
ଭୀମ ବେଣୁକୀ ଆସନେ ।
ସଜ ସରସୀଜ— ମୁଖୀ ମଧ୍ୟେ ବେନି
ପାର୍ଶ୍ୱେ ବେନି ସହଚରୀ,
କେମା ଦଶୁଥିଲା କଣ୍ଟକିତ ବେନି
ପଦରେ ଗୋଲାପ ପରି ।
ଲଳିତାଙ୍ଗୀ ତଳ ଅଙ୍ଗେ ଫୁଟିଥିଲା
ସ୍ୱେଦବିନ୍ଦୁ ଘନ ଘନ,
କରୁଥିଲେ ବେନି ସଖୀ ଧେନି ପତ୍ର
ବ୍ୟଜନ ମୃଦୁ ଗୁଳନ ।
ନେତ୍ର ନିନ୍ଦୁଥିଲା ନାଗସ୍ୱସ୍ୱାରର
ଗୁରୁ ମୀନ, ଦନ୍ତପନ୍ତି—
ହେଲେ ନିନ୍ଦୁଥିଲା ପକ୍ୱ ଡାଳିମ୍ବର
ବୀଜ ତେଜ, ରୂପବତୀ —
ସ୍ୱଭାବେ ଯେଣୁ ସେ ଥିଲା ସୌନ୍ଦର୍ଯ୍ୟର
ସର୍ବଶ୍ରେଷ୍ଠ ଉପବନ,
ପ୍ରତି ଅଙ୍ଗେ ଅଙ୍ଗେ ଫୁଟିଥିଲା ତା'ର
ସୌରଭସିକ୍ତ-ସୁମନ ।

# ରାଣୀ ଦୁର୍ଗାବତୀ

ସସମ୍ଭ୍ରମେ ଅଶ୍ୱ— ବର ପୃଷ୍ଠୁ ଯୁବା
ଓହ୍ଲାଇ ତଳେ ବହନେ,
ବିସ୍ମୟ ନୟନେ ଅନାଇ ରହିଲ
ସୁନ୍ଦରୀ ମୁଖ ଦର୍ଶନେ ।
ଯୁବା ଅଡ଼େ ଲକ୍ଷ୍ୟ କରି କେମା ସଖୀ
ବୋଇଲ ବଚନ ଧୀର,
"ଅବଳାରକ୍ଷିତ ସୁକୁମାର ମୃଗ
ଶରୀରେ ନ ପେଷ ତୀର ।
ଯୁବା ବଜ୍ରବାଣ ସହି ନ ପାରିବ
କୁରଙ୍ଗ ଛାର ଜୀବନ,
ଦୁର୍ବଳ ଦଳନେ ବୀରତ୍ୱ ଦର୍ଶନ
ନୁହେ ବୀର ସୁଶୋଭନ ।"
ଅମୀୟ ଭର୍ତ୍ସନା ବାମାକଣ୍ଠୁ ଶୁଣି
ଯୁବା ମୁଖ ଅବନତ,
ସହସା ଶାଳ୍ମଳୀ ଅଙ୍ଗେ ଲଗିଲ କି
କାହାର କୁଠାର ହସ୍ତ !
ଯୁବା କ୍ଷୁଣ୍ଣ ଜାଣି ବାରଣ ଇଙ୍ଗିତେ
ସଖୀଙ୍କ ଠାରୁ ଗୃହିଣୀ,
"ବାଳା ଚପଳତା କ୍ଷମା ହେଉ ବୋଲି
ଅପର ବୋଇଲ ବାଣୀ ।"

## ପ୍ରଥମ ତରଙ୍ଗ

ଚପଳା ତରୁଣୀ      ସୁଲଭ ଗୃପଲ୍ଲ
ପୁଣି ବଚନସୁମଧୁର,
ନିରେଖି ଯୁବକ      ସୁଲଭ ହୃଦୟୁ
ସଙ୍କୋଚତା ହେଲା ଦୂର ।
ଅସ୍ପର୍ଶ ଏ ନାରୀ —      ସ୍ୱୟୁ କିଏ ଅବା
ସଦ୍ୟ ହୃତ ସିଂହାସନେ,
ନିର୍ଭୟ ମାନସେ      ଭ୍ରମୁଛନ୍ତି ପୁଣି
ନିବଡ଼-ଭୀଷଣ-ବନେ ।
ବେନି ନାରୀ ମଧ୍ୟେ      କିଏ ଅବା ଏହୁ
ଚମ୍ପକ-କୁସୁମ-କଳି,
ମର୍ତ୍ତ୍ୟ ଉପବନେ      ସମ୍ଭବ ବୋଲି ତ
ମନ ପାରୁ ନାହିଁ କଳି ।
ନୀଳ ଘନେ ନିନ୍ଦ      ଚିକୁରଭାର ତା’
କପୋଲ ପରେ କୁଞ୍ଚିତ,
ପୃଷ୍ଠେ ନୀଳ ଫଣି      ପରି କି ସୁନ୍ଦର
ବେଣୀ ହୋଇଛି ଲମ୍ବିତ ।
ନିଶାପତି ଖେଦେ      ଲଜ୍ଜିତ ହେବ ଲୋ
ନିରେଖି ମୁଖମଣ୍ଡଳ,
ସୁମନ-ସଙ୍ଗାତ      ପଳାଇବ ଖରେ
ଦେଖି ନୟନଯୁଗଳ ।

# ରାଣୀ ଦୁର୍ଗାବତୀ

ଅହା କି ଯତନେ ବିଶ୍ୱକାରିଗର
ତୁଳାକାଠି ଧରି କରେ;
ବଙ୍କିମଭାବେ ଯୁଗ୍ମ- ଭ୍ରୂଲତା କାଟିଛି
ଉଜ୍ଜ୍ୱଳ ନୟନ ପରେ ।
କି ରଙ୍ଗେ ରକ୍ତିମା ବିମ୍ବଜିତ ଓଷ୍ଠ —
ଦ୍ୱୟେ ରହିଅଛି ପୂରି,
ତପତ-କାଞ୍ଚନ- ଅଭ୍ର-ଅପଘନେ
ଫୁଟିଛି ନବ ମାଧୁରୀ ।
କନକ ବଳୟେ ଶୋଭୁଅଛି ବାମା
ଲମ୍ବ ଲମ୍ବ କର ବେଣୀ,
କଙ୍କଣେ ଶୋଭଇ ସୁଗୋଲ ବାହୁ ଲୋ
ସରଗ ଲାବଣ୍ୟ ଢେଣି ।
ହୀରକେ ଖଚିତ କଣ୍ଠମାଳା ଗୁଛି
ଦୋଳେ ଉଚ୍ଚ ବକ୍ଷସ୍ଥଳେ,
ସୂକ୍ଷ୍ମ କଟି ତା'ର ମାରି ଅରିଙ୍କ ଲୋ
ଡମ୍ବରୁ ଉପମା ବଳେ ।
ରଙ୍ଗ ଟହଟହ ଅଳତା ରସେ ଲୋ
ଶୋଭଇ ହେମ ଚରଣ,
ପୀତ କେଶରକୁ ବେଢ଼ିଛନ୍ତି ଅବା
କମଳ ପାଖୁଡ଼ାଗଣ ।

ପଶୁରବା ପାଇଁ ବିଶ୍ୱବିମୋହିନୀ
ବରାନନା ପରିଚୟ,
ମହାନଦୀ ବକ୍ଷ ଭଉଁରୀ ପରାଏ
ଆଲୋଡ଼ି ହେଲା ହୃଦୟ ।
ଆନନ୍ଦ ବିସ୍ମୟେ ନ ସହି ବିଳମ୍ବ
ପୁଚ୍ଛା କଲା ଯୁବାବର,
"ବରବର୍ଣ୍ଣିନୀ ଏ' ଆସିଛନ୍ତି କେଉଁ
ପୁର କରି ଅସୁନ୍ଦର ।"
ଯୁବା ପ୍ରଶ୍ନେ ଜେମା ସହଚରୀ ବୋଲେ
ଚନ୍ଦେଲ ବଂଶ ଲଲାମ,
* ମହୋବା ପତିଙ୍କ ଏକମାତ୍ର ସୁତା
ଦୁର୍ଗାବତୀ ଏହା ନାମ ।
ଆସିଥିଲେ ବନେ ମୃଗୟା ବିନୋଦେ
ରାଜଜେମା ବିମ୍ବାଧରୀ,
ତବ ଅନୁସୃତ ମୃଗ ଅନ୍ୱେଷଣେ
ବଧିଛନ୍ତି ଏହି କେଶରୀ ।

---

* ଉତ୍ତର ପଶ୍ଚିମାଞ୍ଚଳର ହାମିରପୁର ଜିଲ୍ଲାରେ ମହୋବା ନାମକ ସହର ବର୍ତ୍ତମାନ ସୁଦ୍ଧା ବିଦ୍ୟମାନ ।

# ରାଣୀ ଦୁର୍ଗାବତୀ

"ବୀରମଣି ! କେଉଁ ରାଜ୍ୟର ଭୂଷଣ
ଏକାକୀ ମୃଗୟୁ ବେଶେ,
ଅଶ୍ୱବରପୃଷ୍ଠେ ଧନୁର୍ତୀର କରେ
ଭ୍ରମୁଛନ୍ତ ବନଦେଶେ ।"
ଏକାଳେ ସେନାନୀ ପଞ୍ଚ ଅଶ୍ୱ ଟାପୁ
ଶବଦେ ବନ କମ୍ପାଇ,
ନଭୁଁ ଉଲ୍କା ପ୍ରାୟ ପ୍ରବେଶିଲେ ଖରେ
ଯୁବକ ନିକଟେ ଯାଇ ।
ବିନୟେ ବୋଇଲେ, "ଅସନ୍ତୁ ବହନ
ନ କର ବିଳମ୍ବ କ୍ଷଣେ,
ଉଦ୍‌ବିଗ୍ନ ମାନସେ ସଶଙ୍କିତ ପିତା
ଏକା ତବ ଅଗମନେ ।"
ଅତୃପ୍ତ ନୟନେ ବିଷାଦ ଫୁଟାଇ
ତରତରେ ଯୁବାବର,
ପଞ୍ଚ ସେନା ସହ ଅଶ୍ୱପୃଷ୍ଠେ ଚଢ଼ି
ଛଟଣୀ କଲା ପ୍ରହାର ।
ଚଳିଲା ଯୁବକ ବାୟୁବେଗେ କିନ୍ତୁ
ଆଗକୁ ନ ଗଲା ମନ,
ମନ ସଙ୍ଗେ ଚଲି ନୟନ ପଛକୁ
ଫେରୁଥିଲା ଘନ ଘନ ।

# ପ୍ରଥମ ତରଙ୍ଗ

ଯୁବକ ଯାଅନ୍ତେ ପରସ୍ପର ମୁଖ
ଚୁହାଁଚୁହିଁ ହେଲେ କ୍ଷଣେ,
କିନ୍ତୁ ଦୁର୍ଗାବତୀ ଏକାଗ୍ର ଦର୍ଶନ
ଯୁବକ ପଥ ଗମନେ ।
ବୋଇଲା ସଜନୀ "କେଉଁ ଭାବସ୍ରୋତେ
ଭସାଇଲୁ ବାଳା ପ୍ରାଣ,
ଉଠ ଉଠ ବେଳ ଉଚ୍ଛୁର ହେଲାଣି
ରାଜ୍ୟେ କରିବା ପ୍ରୟାଣ ।"
ଜେମା ଦୀର୍ଘ ଶ୍ୱାସ ନିରେଖି ଅପର
ସଜନୀ ବୋଇଲା ପୁଣି,
"ସିଂହଗ୍ରାସୁ ରକ୍ଷା କଲୁ ବୋଲି ମୃଗ
ସୁଝିଛୁ ନା ଦୟା ଋଣ ?
ମୃଗ ରକ୍ଷା କରି ଶିକାରୀ ହସ୍ତରେ
ମନ-ମୃଗ ଦେଲୁ ଛାଡ଼ି,
ସେ ମୃଗ ଲାଳନ ପାଳନ ଭାବନା
ଆସିଛୁ କି ଧନ ! ମାଡ଼ି !
ମନ-ମୃଗ ତୋର ନ ହେବ ସୁନ୍ଦର !
ବିକଳାଙ୍ଗ ଯୁବା କରେ,
ପାଳିତ ହୋଇବ ସଯତନେ ପୁଣି
ପ୍ରେମବୋଳା ସମାଦରେ ।

# ରାଣୀ ଦୁର୍ଗାବତୀ

କିଏ ସେ ସୁନ୍ଦର    କେଉଁ ପୁଣ୍ୟଭୂମି
ମୁଖସୁଧା କରି ପାନ,
କରୁଥିବ ନିତ୍ୟ    ଆନନ୍ଦ ଉଲ୍ଲାସେ
ସୌନ୍ଦର୍ଯ୍ୟ ବୈଭବ ଗାନ ।
ଭୁଲିଗଲେ କିପାଁ    ଅବହେଳେ ବୀର
ମଣ୍ଡନେ କଟାକ୍ଷ ଦେଇ,
ଜଣା ଯାଉଥିଲା    ମୁଖରୁ ଅଛନ୍ତି
ଦୁଃଖସ୍ମୃତି ସଙ୍ଗେ ନେଇ ।
କହୁଥାନ୍ତେ ବୀର    କେଉଁ ରାଜ୍ୟ ଘର
କେଉଁ ବଂଶ ସମୁଜ୍ଜ୍ୱଳ—
ମାଣିକ୍ୟ ସେ' କିନ୍ତୁ    ପ୍ରତିଘାତ ଦେଲେ
ପ୍ରବେଶି ସେନାନୀ ଦଳ ।
ନେଇ ତ ନାହାନ୍ତି    ସଙ୍ଗରେ କେବଳ
ଦୁଃଖସ୍ମୃତି, କେମା ମନ—
ଭୈର କରି ସଙ୍ଗେ    ଦେଖି ଯାଉଛନ୍ତି
କରିବା ମାତ୍ରେ ଦର୍ଶନ ।"
ଯୁବା ଚିବା ପଥ    ସତୃଷ୍ଣ ନୟନେ
ମଣ୍ଡନେ କରି ଲୋକନ,
କେମା ସଖୀ ସହ    କଲେ ଧୀରେ ତହୁଁ
ସଦନେ ପ୍ରତ୍ୟାଗମନ ।

# ଦ୍ୱିତୀୟ ତରଙ୍ଗ



ରାଜା ରାଜରାଣୀ ହୃଦୟ-ଚନ୍ଦ୍ରକା
ଦୂର୍ଗାବତୀ ଜେମାଦେଇ,
ଯଉବନ ବନେ ଭ୍ରମୁଥିଲା ବାଳା
ଲାବଣ୍ୟ ପେଟିକା ଫେଇ ।
ଶଶୀ ହସି ଧନେ ବରଷି କୌମୁଦୀ
ହସାଉଥିଲେ ଏ ରସା,
ଜେମା ଯଉବନ ଫୁଟି ଉଠୁଥିଲା
କାମେ କରି ଲୋକହସା ।

# ରାଣୀ ଦୁର୍ଗାବତୀ

ପ୍ରାସାଦ ଶିଖରେ ଭୁବନମୋହିନୀ
ରତନ ପଲଙ୍କେ ବସି,
ଅଳସ ବିଳାସେ ହାଇ ମାରି ଧୀରେ
ଦେଖୁଥିଲି ପୂର୍ଣ୍ଣ ଶଶୀ ।
ପାଶେ ବସି ସଖୀ ଗାଉଥିଲି ଗାନ
'ଦୁଷ୍ମନ୍ତ ଚରଣ ଧରି,
ଦରହାସେ ଯେବେ ଭାଷୁଥିଲି ବାଣୀ
କଣ୍ୱତନୟା ସୁନ୍ଦରୀ ।
ଯତନେ ଗ୍ରଥିତ ସୁମନ ମାଳା ଲୋ
ନରପତି କଣ୍ଠ ପରେ,
ଗୂଢ଼ ଭାଷା ଭଣି ଶକୁନ୍ତଳା ଧନୀ
ପିନ୍ଧାଉଥିଲି ଆଦରେ ।'
ଏକାଳେ ଅପର ସଜନୀ ପ୍ରବେଶି
ବୋଇଲି,"ଥାଉ ତୋ ଗାନ,
ସେ ଦିନେ ଦୁଷ୍ମନ୍ତ ପ୍ରେମିକ ଚୋର ଲୋ
ଭାଙ୍ଗିଗଲଣି ତା' ଠାଣି ।
ବୃଥା କାହିଁକି ଲୋ ଶକୁନ୍ତଳା ପାଇଁ
ସଜାଉଛୁ ଫୁଲ ହାର,
ଦୁଷ୍ମନ୍ତ ପ୍ରଣୟ ଦୁର୍ବାସା ଆଦେଶେ
ଗମିଲଣି କାରାଗାର ।"

## ଦ୍ୱିତୀୟ ତରଙ୍ଗ

ନ-ବୁଝି ସଜନୀ— ରହସ୍ୟ ଭୂଷଣ
ସଜନୀ ଲପନ ଗୃହିଁ,
ଅପର ବୋଇଲା, "ଦୁଷ୍ମନ୍ତ ପ୍ରଣୟ
କାରାଗାରେ କସ ପାଇଁ ?"
"କାରାଗାରେ କପିଁ। ଶୁଣିବୁ ସଙ୍ଗାତ
ଅଜ ରାଜସଭା କାଳେ,
ରାଜ ଚୂଡ଼ାମଣି ଶୁଣୁଥିଲେ ଧୀରେ
ବସି ସଭା ଅନ୍ତରାଳେ ।
*ଗଡ଼ରାଜ୍ୟ ନାମେ କେଉଁ ରାଇଜ ଲେ
ରାଜଦୂତ ଅସି ତହିଁ,
ନାରିକେଳହସ୍ତେ ସେ ରାଜ୍ୟ ବିଭବ
କେତେ ଭାବେ ଗଲା କହି ।
ଅମ୍ଭ ରାଜା କରେ ଅରପି ଶ୍ରୀଫଳ
ବୋଇଲା ବିନୟ ବାଣୀ,
ବନ୍ଧୁଭାବେ ଏକ ପ୍ରାର୍ଥନା ଅମ୍ଭର
ପୂରାଅ ହେ ନରମଣି !.

---

* ଏଲ୍ଲାହାବାଦରୁ ଅନୁମାନ ଏକଶତ କୋଶ ଦକ୍ଷିଣ ପଶ୍ଚିମରେ ଗଡ଼ମଣ୍ଡଳ ନାମକ ଗୋଟିଏ ପ୍ରାଚୀନ ହିନ୍ଦୁରାଜ୍ୟ ଥିଲା । ବର୍ତ୍ତମାନ ସୁଦ୍ଧା ଏହାର ଭଗ୍ନାବଶେଷ ବିଦ୍ୟମାନ ।

ତବ ଶୁଭ୍ରଶିରେ ଅଖଣ୍ଡ ରାଜ୍ଜ
ସଙ୍ଗେ ଗଉରବ ଧନ,
ଅଛନ୍ତି ଅମ୍ଭର ଅବର ନୟନ-
ସଞ୍ଚାଳି ଏକ ନନ୍ଦନ ।
ନାହିଁ ସେ ରାଇଜେ ଅଭାବ କାହାର
ସଦା ସୁଜଲା ସୁଫଳା,
ହସ ହସ ମୁଖେ ବିରାଜନ୍ତି ତହିଁ
ଜଗତମାତା କମଳା ।
ଗୋଟିଏ ମାତର ଅଭାବ ଅମ୍ଭର
ପୂରଣ କର ରାଜନ !,
ନନ୍ଦିନୀକି ତବ ପୁତ୍ରବଧୂ ରୂପେ
କର ଶୁଭେ ଅରପଣ ।”
ଏ କଥା ଶ୍ରବଣେ ବୋଇଲେ ମହୋବା—
ଛତ୍ରପତି ଦଣ୍ଡଧର,
“ବିବାହ ବନ୍ଧନ ବିଧାତା ବିଧାନୁ
ଆନ ନୁହେ ଦୂତବର !
ତବ ଯୁବରାଜ କରେ ଅର୍ପିଥିଲେ
ଏକଇ ସୁତା-ରତନ,
ବନ୍ଧ ସୁକଲ୍ୟାଣେ ହୋଇଥାନ୍ତା ମମ
ଆନନ୍ଦ ଭବେ ବର୍ଦ୍ଧନ ।

## ଦ୍ୱିତୀୟ ତରଙ୍ଗ

ଦୂତମଣି ! କିନ୍ତୁ ଚନ୍ଦେଲ ବଂଶୀୟ
କେବେ କେହ୍ନ ନରପତି,
ବଢ଼ାଇ ନାହାନ୍ତି ମାନ ଗଡ଼ରାଜ୍ୟେ
ଅରପି ନିଜ ସନ୍ତତି ।”
ବୋଇଲ ସେ ଦୂତ “ବୁଝିଲି ନରେଶ !
କନ୍ୟା ଦାନେ କର୍ପାର୍ଣ୍ଣ,
ଭାଲଛନ୍ଦ ଗଡ଼— ରାଜ୍ୟ ଅଧୀଶ୍ୱରେ
ବଂଶ ଗଉରବେ ହୀନ ।
ବାର୍ଦ୍ଧକ୍ୟ ପୀଡ଼ନେ ରୋଗ ଶଯ୍ୟାଶାୟୀ
ଗଡ଼ ରାଜ୍ୟ ନରସାଇଁ,
ଭାଲଥିଲେ ମର୍ତ୍ତ୍ୟ— ଲୀଳା ସାରଥାନ୍ତେ
ନବବଧୂ ମୁଖ ଚାହିଁ ।
ଶୁଣିବେ ଯେ କାଳେ ନୀଚ ବଂଶ ଦୋଷେ
କନ୍ୟାଦାନ ପ୍ରତ୍ୟାଖ୍ୟାନ,
ଏହ୍ନ ଅପମାନ ସହ୍ନ ପାରବଟି
ବାର୍ଦ୍ଧକ୍ୟ-ଜୀର୍ଣ୍ଣ ପରାଣ ?
ଯାଉଛୁ ନରେଶ ! ଏହ୍ନ କଥା ରାଜ—
କୁମାରେ କହ୍ନବ ଯାଇ,
ମନେ ହୁଏ କିନ୍ତୁ ପରିଣାମ ଯୁଦ୍ଧ
ବିନା ଆନ ହେବ ନାହିଁ ।

# ରାଣୀ ଦୁର୍ଗାବତୀ

ଯୁବରାଜ ହୃଦ                    ବୀର-ବହ୍ନି-କୁଣ୍ଡେ
ଅହୁତ ହେବ ଏ' ବାଣୀ,
ସମର ନିନାଦେ                    ଗରଜି ଉଠିବ
ଗଡ଼ରାଜ୍ୟ ରାଜଧାନୀ ।"
ଦୂତ ମୁଖୁଁ ଶୁଣି                    ଯୁଦ୍ଧ ଆମନ୍ତ୍ରଣ
ଭ୍ରୂ କୁଞ୍ଚନେ ନରପତି,
ବୋଇଲେ "ଇତର                    ଦୂତ ଜନମୁଖେ
ନ ଶୋଭେ ଏହି ଭାରତୀ ।
ଭାଳିଛ କି ଦୂତ                    ବାକ୍ୟବାଣେ ରଚି
ଭାବୀ ସମର ପ୍ରାଙ୍ଗଣ,
ମନୋବାଞ୍ଛା ପୂର୍ଣ୍ଣ                    କରିବ କେବଳ
ଭୀତି କରି ପ୍ରଦର୍ଶନ ।
ଭାଳିଛନ୍ତି ଅବା                    ତବ ଯୁବରାଜ
ବୀର ଇନ୍ଦ୍ର ବାହୁବଳେ,
ଆନ କେହି ନାହିଁ                    ତାଙ୍କ ପ୍ରତିଦ୍ୱନ୍ଦ୍ୱୀ
ସେହି ଏକା ଭୂମଣ୍ଡଳେ ?
ଦୂର ହୁଅ ବେଗେ                    ନୀଚ ନରପତି—
ନୀରୁଣସ୍ତ୍ର ବାର୍ତ୍ତାବହ,
ରଣାଙ୍ଗନେ ଯୋଗ୍ୟ                    ଶିକ୍ଷା ଦେବି ତବ
ପ୍ରଭୁଙ୍କୁ ବାରତା କହ ।"

# ଦ୍ୱିତୀୟ ତରଙ୍ଗ

ମନ୍ତ୍ରୀଙ୍କ ହକାର          ଆଦେଶିଲେ 'ଦୁତେ
କାରାଗାରେ ରଖ ନେଇ,
ରଜନୀ ପାହିଲେ          ମୁକ୍ତ କରି ଦେବ
ଉଚିତ ପାଥେୟ ଦେଇ ।'
ଏହି ତ ତୋମାର          ପ୍ରଣୟ-ଦେବତା—
ଦୁଃଖବର କାରାଗାରେ,
ତୁ ପୁଣି ଏ' କିସ          ସଜାଉ ଦୁଷ୍ମନ୍ତେ
ସୁମନ ଗ୍ରଥିତ ହାରେ ।"
ସଜନୀ ବୋଇଲା,          "ଯାଅ ଲୋ ନିର୍ଲଜ୍ଜୀ
ଶଶଧର କରେ ଅଣି,
ମନେ ମନେ ମନ          ଭୁଷତେ ସବଳେ
ଅରଣ୍ୟ କମଳ ପାଣି ।
କାହିଁ ତୋମାମଣି          ପ୍ରଣୟପିତୁଳ
ଦୁଷ୍ମନ୍ତ-ବନବିହାରୀ,
କାହିଁ ଅବା ତୋର          ଅଦେଖା ଅଶୁଣା
ଗଡ଼ରାଜ୍ୟ ଅଧିକାରୀ ।
ଲଳିତ ମୋହନ          ଦୁଷ୍ମନ୍ତ ଦର୍ଶନ
ବାସନା ଥିଲେ ତୋ ମନେ,
ଆ' ତେବେ ଦେଖିବୁ          ଆମ୍ଭ ସଙ୍ଗେ ସେହି
ତଟିନୀ-ତୀର-କାନନେ ।"

# ରାଣୀ ଦୁର୍ଗାବତୀ

ଏହା କହି ବାମା    ବେନି ଓଷ୍ଠ ଗୃପେ
ସବଳେ ସଂହାର ହାସ,
ଜେମା ମୁଖେ ବାଙ୍କ    ଗୃହାଣି ପକାଇ
ମୁଖେଁ ଅବୋରିଲା ବାସ ।
ଶୁଣି ନ ଶୁଣିଲା    ପରିଏ ନନ୍ଦନୀ
ବୋଇଲା କୃତ୍ରିମ କ୍ରୋଧେ,
"ବେଳ ନାହିଁ ସଦା    କାପାଇଁ ରସ ଲୋ
ପରିହାସ ଅନୁରୋଧେ ।"
ଗୁରୁପଦେ ବାଳୀ    ତ୍ରିଭଙ୍ଗ ଭଙ୍ଗେ ଲୋ
ନାସିକା ଫୁଲାଇ ଖିରେ,
ସଖୀ ସଙ୍ଗସୁଖ    ବରଜି ସେ ସ୍ଥାନୁ
ପଳାଇଲା ତରତରେ ।
ସେହି ଦିନୁ କିନ୍ତୁ    ନୂଆ ନୂଆ ଭାବ
ଦେଖା ଦେଲା ଜେମା ମନେ,
ସଖୀଗଣ ସହି    ନ ବଳେ ମାନସ
ବିହରେ ସଦା ବିଜନେ ।
ଅତି ପ୍ରତ୍ୟୁଷରୁ    ଯାଏ ଉଦ୍ୟାନେ ଲୋ
କି ଭାବ କରି ପୋଷଣ,
ସଜ ବିକଶିତ    ଗୋଟି ଗୋଟି ଫୁଲ
କରଇ ଧୀରେ ଚୟନ ।

# ଦ୍ୱିତୀୟ ତରଙ୍ଗ

ସେ ସଜ ସୁମନ          ବକ୍ଷ ପରେ ରଖି
ମାଧବୀ ମଣ୍ଡପେ ବସି,
କପୋଳରେ କର          ନିହ୍ନ କିସ ପୁଣି
ଭାବୁଥାଏ ମଦାଳସୀ ।
କିସ ଭାବ ମନେ          ଅସନ୍ତୁ ଉଠି ଲୋ
କଣ୍ଟକିତ ଅପଘନେ,
ବିଶାଳ ନୟନୁ          ଲୋତକ ଢାଳଇ
ଶିଶିର-ସିକ୍ତ-ସୁମନେ ।
ସାୟଂକାଳେ ପୁଣି          ନିଭୃତ ସଦନେ
କରେ ଗୃହୁ ବୀଣା ଘେନି,
ଦର-ବିଗଳିତ—          କଣ୍ଠେ ଧରେ ନବ
ବିରହବୋଲା ରାଗିଣୀ ।
ପ୍ରଫୁଲ୍ଲ ବଦନ          ଚନ୍ଦ୍ରାରେଖା ଧଶ
ଦିଶଇ ଅତି ମଳିନ,
ଦିନୁ ଦିନୁ କପାଁ          ସୁନ୍ଦରୀ ଶରୀର
ହୋଇ ଯାଉଅଛି ଶୀର୍ଣ୍ଣ ।
କନ୍ୟା ହାବ ଭାବ          ନିରେଖି ଜନନୀ
ଚିନ୍ତିତ ହୋଇଲେ ମନେ,
ମନ କଥା ତାର          ବୁଝିବା ପାଇଁ ଲୋ
ନିୟୋଜିଲେ ସଖୀଗଣେ ।

# ରାଣୀ ଦୁର୍ଗାବତୀ

ସଖୀ ସିନା ଜାଣେ                    ସଖୀ ମନକଥା
ଆନ ବା ଜାଣିବେ କାହିଁ ?
ବୁଝିଲେ ସଙ୍ଗାତେ                    ଧନୁ ଧନୁ ଜେମା
ମୁଖ ମଳିନ କପାଇଁ ।
ଧନେ ସଖୀ ଜେମା —                 କୁନ୍ତଳ ସଜାଡ଼ି
ବୋଇଲା "ଲୋ ଚନ୍ଦ୍ରମୁଖି !
ଭାବନା-ସାଗରେ                      ଭରମି ଭରମି
କପାଁ ହେଉ ମନେ ଦୁଃଖୀ ।
କେଶରୀ କବଳୁ                        ରକ୍ଷିତ କୁରଙ୍ଗ
ଭ୍ରମୁଛୁ କି ହୃଦ-ବନେ,
ଖୋଜିବା ସେ ମୃଗ                    ସେଥିପାଇଁ ଚନ୍ତା
ପୋଷୁ କପାଁ ଅକାରଣେ ।
କାଲି ପରଭାର୍ତେ                       ଯିବା ଲୋ ସୁନ୍ଦରି !
ସିଂହଦ୍ୱତ ବନସ୍ଥଳେ,
ଭେଟିଲେ କୁରଙ୍ଗ                       ଧଉଡ଼ି ଅଣିବା
ନିଜ ଘରେ କଉଶଳେ ।"
ନ ପାହୁଁ ରଜନୀ                       ସେଦନ ମହୋବା
ଦୁର୍ଗ ଗୁମ୍ବଜ ଶିଖରେ,
'ଦୁଲ୍ଲୁ ଦୁଲ୍ଲୁ' ନାଦେ                    ସମର ଦୁନ୍ଦୁଭି
ନିନାଦ ଉଠିଲା ଖରେ ।

# ଦ୍ୱିତୀୟ ତରଙ୍ଗ

'ସାଜ ସାଜ' ରବେ    ନବରେ ନବରେ
ପଡ଼ିଗଲା କୋଳାହଳ,
ଧନୁ-ଶର-ଖଡ୍ଗ—    ଧାଇଁ ସେନାଗଣ
ଧାଇଁଲେ ଦଳକୁ ଦଳ ।
ପ୍ରଭାତ ସୁଲଭ    ବତାସ କମ୍ପନେ
ସଘନେ ବାଜିଲା ଭେରୀ,
ଉଗର ଡାକିଲା    ଗଡ଼ରାଜ୍ୟ ସେନା
ମହୋବା ଗଲେଣି ଘେରି ।
ମୁଖରିତ ରୋଳ    ଶ୍ରବଣେ ଚମକି
ପ୍ରାଚୀ ଗଗନେ ରବି,
ଉଷା ରଙ୍ଗପଛ    ଫିଟାଇ ଚଞ୍ଚଳ
ଦେଖିଲେ ଭୀଷଣ ଛବି ।
ମହୋବା *ସିଙ୍ଗୁର    ଗଡ଼ ବେଣ୍ଣ ଥାଟେ
ଲାଗିଛି ଭୀଷଣ ରଣ,
ରଥୀ ସଙ୍ଗେ ରଥୀ    ଗଗନ ଛୁଇଲେ
ଋଦ୍ଧ ଶାଣ-ମାଦଗଣ !

*ଗଡ଼ମଣ୍ଡଳର ତଦାନିନ୍ତନ ରାଜଧାନୀ ।

# ରାଣୀ ଦୁର୍ଗାବତୀ

ପଦାତ ଧଦାତ    ରଣେ ମତ୍ତ ହେଲେ
ଘେନି କରେ କରବାଳ,
ଅଶ୍ୱ-ଖୁର-କ୍ଷୁଣ୍ଣ    ଧୂଳି ତମେ ଢଣା
ତପନ-କିରଣ-ଜାଳ ।
ଛାୟାବୃତ ରଣ—    ସ୍ଥଳୀ ନ ପଡ଼ନ୍ତେ
ତପନ ତେଜ ନୟନେ,
ସମର ଦର୍ଶନ    ଆଗ୍ରହେ ଅମ୍ବର
ଉଠିଲେ ଉଚ୍ଚ ଗଗନେ ।
ଦେଖୁଁ ଦେଖୁଁ ବେନି    ଆଠ ମଧ୍ୟେ ରଣ
ଭୀଷଣୁ ଭୀଷଣତର,
ନର ଶିରମାଳେ    ସମରପ୍ରାଙ୍ଗଣ
ରକତେ ହେଲା ଜର୍ଜର ।
ଊର୍ଦ୍ଧ୍ୱେ ଦିନକର    ଅନାଇ ଦେଖିଲେ
ଆଠ ମଧ୍ୟେ ବେନି ବୀର,
ଯୁଝୁଥିଲେ ଘୋର    ଗରଜନେ ଛାଇ
ଗଗନମଣ୍ଡଳେ ତୀର ।
ଏକ ରଥେ ବୃଦ୍ଧ    ଅପର ସ୍ୟନ୍ଦନେ
ଯୁବାବର ଧନୁଷ୍ପାଣି,
ଛାଡୁଥିଲେ ଶର    ଶରାସନ ଗୁଣ
କର୍ଣ୍ଣ ପର୍ଯ୍ୟନ୍ତେ ଟାଣି ।

# ଦ୍ୱିତୀୟ ତରଙ୍ଗ

ଯୁଝି ଯୁଝି ଯୁବା କୋପେ ତୀକ୍ଷ୍ଣଶର
ପେଶି ଦେଲା ବାହୁବଳେ,
ବେଣ୍ଣ ଖଣ୍ଡେ ଧନୁ ବୃଦ୍ଧ କରୁ ଖରେ
ପଡ଼ିଲା ଅବନୀତଳେ ।
ଶରାସନ ଶୂନ୍ୟ ବୃଦ୍ଧେ ଚାହିଁ ଯୁବା
ବୋଇଲା,"ହେ ବୀରବର,
ଏ' ବୃଦ୍ଧ ବୟସେ ସଂଗ୍ରାମବିଳାସ
ଦିଶେ ବଡ଼ ଅସୁନ୍ଦର ।
ଜୀବନ ମମତା ଥିଲେ. ବୃଦ୍ଧ ଏବେ
ବାହୁଡ଼ ଆପଣା ପୁରେ,
ସମର ଦୁର୍ଜୟ ଲାଳସା ଯଦ୍ୟପି
ଅପସର ଦେଖ ଦୂରେ ।"
ଯୁବା ମୁଖେ ଶୁଣି ଏତକ ବୃଦ୍ଧ ଲୋ
କ୍ରୋଧ ଆରକ୍ତ ଲପନେ,
ବୋଇଲା,"ବର୍ବର ! ବୃଥା ଗର୍ବ ତୋର
ଭାଙ୍ଗିଯିବ ଏହୁ କ୍ଷଣେ ।
ହୃଦୟେ ସାହସ ଥାଏ ଯଦି ଶିଶୁ
ଧର କରବାଳ କରେ,
ସ୍ୟନ୍ଦନ ବରଜି ପରଖି ନାଅ ତୁ
ବୃଦ୍ଧ ବାହୁବଳ ଥରେ ।"

## ରାଣୀ ଦୁର୍ଗାବତୀ

ନୟନ ଛଟକେ ଯୁବା ଭରତରେ
ଖୋଜି କରବାଳ ଫେରି,
ଲମ୍ଫ ଗୁରୁ ପଦେ କେଶରୀ ବାଙ୍କେ
ସ୍ୟନ୍ଦନୁ ପଡ଼ିଲା ଡେଇଁ ।
ଖଡ଼ଗେ ଖଡ଼ଗେ ଯୁଝିଲେ କି ଅବା
କେଶରୀ ସଙ୍ଗେ କେଶରୀ,
ଶୁଭ୍ର ଶଙ୍କ ମୂଳ ଦନ୍ତେ ଯୁଝୁଥିଲେ
କରୀ ସଙ୍ଗେ ଅବା କରୀ ।
ପରସ୍ପରେ ସ୍ଥିତ – ବକ୍ଷେ ବୃତ୍ତାକାରେ
ଘୂରି ଘୂରାଇ ନୟନ,
ରଚିଲେ ତାଣ୍ଡବ ଦେଖାଏ ଦେଖାନ୍ତି
ଛିଦ୍ର କରି ଅନ୍ୱେଷଣ ।
ପ୍ରହାରୁ ପ୍ରହାରୁ ବୃଦ୍ଧ କରବାଳ
ବାଜି ଯୁବାକର-ଢାଲେ,
ଦେଖ ଖଣ୍ଡ ହେଲା ବିଜୟ ସେ ଦିନ
ନ ଥିଲା କି ବୃଦ୍ଧ ଭାଲେ !
ଖଡ଼୍‌ଗଶୂନ୍ୟ ହସ୍ତ ହୋଇ ବୃଦ୍ଧ ରଣେ
ଯୁବକ ସାହସ ଧୀର,
ଦେଖି ମନେ ମନେ ପ୍ରଶଂସିଲେ, "ଧନ୍ୟ
ଧନ୍ୟ ହେ ଦୁର୍ଜୟ ବୀର ।"

# ଦ୍ୱିତୀୟ ତରଙ୍ଗ

ଯୁବକ ନରେଶ          ବୃଦ୍ଧ ଖଡ୍ଗଭଙ୍ଗ
ନରସ୍ତ୍ର ରଣେ ମାରଣ,
ବୀର ଧର୍ମୋଚିତ          ନୁହେ ବୋଲି ବୃଦ୍ଧେ
ବୋଇଲେ ମୃଦୁ ବଚନ ।
"ସମ୍ମୁଖ ସମରେ          ଦେଖିଛୁ ହେ ତବ
ଅସ୍ତ୍ରଚାଳନା କୌଶଳ,
ଜରାଜୀର୍ଣ୍ଣ ଅଙ୍ଗେ          ଦେଖାଇଛ ବୀର
ଯୁବା ସଙ୍ଗେ ସମବଳ ।
ନରସ୍ତ୍ର ସମ୍ପ୍ରତି          ପ୍ରାଣ ଆଶା ନେଇ
ବାହୁଡ଼ ଆପଣା ଘରେ,
ବାର ବାର ଏହି          ଅନୁରୋଧ ମୋର
ନ ଶୁଣ କିପାଇଁ ଥରେ ।
କ୍ରୀଡ଼ାଭୂମି ନୁହେ          ଯୁଦ୍ଧଭୂମି ବୃଦ୍ଧ ।
ଏହି ସ୍ଥାନେ ମୋହ ମାୟା,
ସ୍ନେହ ପ୍ରୀତି ଦୟା          କ୍ଷମା କରୁଣାର
ନ ପଡ଼ଇ କ୍ଷୀଣ ଛାୟା ।"
ଯୁବା ବାକ୍ୟେ ବୃଦ୍ଧ          ବୋଇଲେ,"ଥାଅନ୍ତା
ଖଣ୍ଡେ ମାତ୍ର ପଦ ଅସି,
ଦେଖନ୍ତ ସମ୍ମୁଖ          ସମରେ ତୁମ୍ଭର
ବୀରତ୍ୱ ବଇଭବ କଷି ।"

# ରାଣୀ ଦୁର୍ଗାବତୀ

ଏକାଳେ ସହସା        ବିଦ୍ୟୁତ ବେଗରେ
ଘୋଟକ ଉପରେ ବସି,
ଉନ୍ମୁକ୍ତ କୃପାଣ        କରେ ଘେନି କିଏ
ପ୍ରବେଶିଲା ମଦାଳସୀ ।
କହିଲା,"ନରେଶ !        ଭାବ ନା ଭାବ ନା
ଘେନ ଖଡ୍ଗ ମୁଦ ମନେ,
ଦେଖାଅ ନିଜର        ବୀରତ୍ୱ ବିଭବ
ନ କର ବିଳମ୍ବ କ୍ଷଣେ ।"
କିଏ ଏ ସୁନ୍ଦରୀ        ଗୋରୀ ପିନ୍ଧି ଅଙ୍ଗେ
ସ୍ୱର୍ଣ୍ଣ ତାରକିତ ଶାଢ଼ୀ,
ସୁନୀଳବସନା        ପ୍ରଫୁଲ୍ଲ ନୟନେ
ରଣାଙ୍ଗନେ ଦିଏ ଧାଡ଼ି ।
ଫୁଟି ପଡ଼ୁଥିଲା        ପ୍ରତି ଅଙ୍ଗେ ତାର
ଯୌବନ ସୁମନ ଦାମ,
ପଞ୍ଚଶର ଅବା        ଦେଇ ଯୁବା ଦର୍ପ
ନାଶନେ ପେଶିଛୁ କାମ !
ରଣରଙ୍ଗ ଯୁବା        ଦର୍ଶନ ମାନବକେ
ଲଳିତ-ଲଲନା-କାନ୍ତି,
ଅତୀତ ଦିନର        ପରିଚିତ ତୁଲ୍ୟ
ସ୍ମୃତି ଅରପିଲା ଭ୍ରାନ୍ତି ।

# ଦ୍ୱିତୀୟ ତରଙ୍ଗ

କି ଏକ ଅପୂର୍ବ ଭାବ ଖେଳିଗଲା
ଯୁବକ ତରଳ ମନେ,
ଲିପ୍ତ ହେଲା ତାର ସର୍ବାଙ୍ଗ ସଘନେ
ପ୍ରଣୟ-ମୃଦୁ-କମ୍ପନେ ।
ଚକ୍ଷୁ ରତ ହେଲା ସୁନ୍ଦରୀମଣିର
ଶୁଭ୍ର ଗାତ୍ର ବିଲୋକନେ,
ବୀରମଦ ଛାଡ଼ି ପ୍ରେମୋନ୍ମାଦ ଆସି
ପୂର୍ଣ୍ଣ ହେଲା ଯୁବା ମନେ ।
ଅଲକ୍ଷିତେ କରୁ ଖସି ପଡ଼ିଗଲା
ଯୁବା କର-କରବାଳ,
ରଣଭୂମି ପ୍ରେମ— ନିକୁଞ୍ଜ ଦିଶିଲା
ସର୍ବାଙ୍ଗୁ ବହିଲା ଝାଳ ।
ଯୁବକ ନୟନ ଲାଗି ରହିଗଲା
ଯୁବତୀ ମୁଖ ଦର୍ଶନେ,
ପରିଚିତ ଥିଲା ଯେଣୁ ବାଳାମଣି
ତଟିନୀ-ତୀର-କାନନେ ।
ଯାହା ରୂପେ ମୁଗ୍ଧ ଥିଲା ଯୁବା ନେତ୍ର
ଯା'ର ପ୍ରାପ୍ତି ଅଚେଶ ମନ,
କଳ୍ପନା ଅଶ୍ୱେ ପଥ ଖୋଜୁଥିଲା
ଅବିରତେ ଘନଘନ ।

# ରାଣୀ ଦୁର୍ଗାବତୀ

ସେ ଶୋଭୁଥିଲା ନାରେଣି ସମର-
ପ୍ରାଙ୍ଗଣେ ବୀର-ଶେଖର,
ଭାବାବେଶେ ହେଲା ଅଚଳ, ପ୍ରଣୟ
ହୃଦୟ କଲା ଜର୍ଜର ।
ଈର୍ଷା ଦ୍ୱେଷ ଦମ୍ଭ ମାନ ଅଭିମାନ
ଯୁବକ ହୃଦୟ ଛାଡ଼ି,
ଦୂରୀଭୂତ ହେଲେ— ଯେଣୁ ଯୁବା ହୃଦେ
ପ୍ରଣୟ ଅସିଲା ମାଡ଼ି ।
ସ୍ୱକରେ ଧେନାଥିଲା କରବାଳ ବାଳା
ଦେବା ପାଇଁ ବୃଦ୍ଧ କରେ,
ଏ' କାଳେ ସହସା ନୟନ ପଡ଼ିଲା
ଯୁବାବର ବଦନରେ ।
ଫେରି ନ ପାରିଲା ନେତ୍ର ସୁନ୍ଦରୀର
ଯୁବକ ବଦନ ଛାଡ଼ି,
ସମ୍ଭାଳି ନେଲା ସେ ପ୍ରଣୟ ଅବେଗେ
ଅଗକୁ ପଡ଼ନ୍ତି କରୁଡ଼ି ।
କମ୍ପିଲା ସଘନେ ସର୍ବାଙ୍ଗ ବାଳାର
ପ୍ରଣୟ ପିପାସା ମନ,
ରଣ ଅଶା ଛାଡ଼ି ପ୍ରେମ-ସଙ୍ଗତରେ
ଖରେ କଲା ସନ୍ତରଣ ।

## ଦ୍ୱିତୀୟ ତରଙ୍ଗ

ଯେଉଁ ପ୍ରିୟ ସଙ୍ଗ- ଲଭି ଅଶେ ବାଳା
ହୃଦୟେ ଥିଲା କାମନା,
ରଣକ୍ଷେତ୍ରେ ସେହି ବାଞ୍ଛିତ-ରତନ
ଲଭିଲା ହେଲେ ସୁମନା ।
ଯୁବା ଛାଡ଼ି ଅନେ ନ ଗୃହିଁଲା ବାଳା-
ନୟନ, ତରଳ ମନ,
ପ୍ରେମେ ବନ୍ଧା ହେଲା କବରୀ ମାନବକେ
ଯୁବା ରୂପ ବିଲୋକନ ।
କଣ୍ଟୁ ଖସିଗଲା ଯୁବତୀମଣିର
କରବାଳ ରଣାଙ୍ଗନେ,
ନିକଟ ସୁନ୍ଦରୀ ଭୁଲିଥିଲା ଯେଣୁ
ସେ ସୌନ୍ଦର୍ଯ୍ୟ ଦରଶନେ ।
ବୃଦ୍ଧ ମହୋବାର ନରେନ୍ଦ୍ର ନିକଟେ
କରୁଥିଲେ ବିଲୋକନ,
ଯୁବକ ଯୁବତୀ ଭାବ ବୁଝିଲେ ଏ
ପ୍ରଣୟର ନିଦର୍ଶନ ।
ସହସା ସମର ସ୍ଥଗିତ ସଙ୍କେତ
ଉଡ଼ିଲା ଶୁଭ୍ରକେତନ,
ଶାନ୍ତ ଶାନ୍ତ ରବେ ବିଶ୍ରାମ ଦୁନ୍ଦୁଭି
ବାଜିଗଲା ଘନଘନ ।

ଯୁବକ ଥିଲେ ସେ ଗଡ଼ରାଜ୍ୟ ବୀର
ଦଲପତ ଯୁବରାଜ,
ଦେଖାଇଲେ ଯେହ୍ନୁ ସମ୍ମୁଖ ସମରେ
ବୀରତ୍ୱ ବିଭବ ଅଜ।
ଦୁର୍ଗାବତୀ ଥିଲେ ଯୁବତୀ ରତନ
ଯେହ୍ନୁ ଆସି ରଣାଙ୍ଗନେ,
ବୀରଦର୍ପ ଧ୍ୱଂସି ପ୍ରଣୟ ବନ୍ଧନ
ବାନ୍ଧିଥିଲେ ଯୁବା ମନେ।
ଯେଉଁ ରଣାଙ୍ଗନେ ବହୁ ଯାଉଥିଲା
ଶୋଣିତର ପ୍ରବାହିନୀ,
ଯୁବକ ଯୁବତୀ ବୁହାଇଲେ ତହିଁ
ପ୍ରେମ-ଝର-ମନ୍ଦାକିନୀ।

## ତୃତୀୟ ତରଙ୍ଗ



**ସେହି** ପୁଣ୍ୟ ଦିନେ          କେଉଁ ଦୂର ଦେଶେ
ସୁଧାଂଶୁ ସଙ୍ଗେ ତପନ,
ଅତି ସଙ୍ଗୋପନରେ          ଚଳାଇଥିଲେ କେ
ଲୁଚକାଳି ଖେଳେ ମନ ।
ଛନଛନ ମନେ          ଦଉଡ଼ିଲେ ଘରେ
ତପନ ନୀଳ ଗଗନେ,
ପଛେ ପଛେ ତାଙ୍କ          ଗୋଡ଼ାଇଲେ ଶଶୀ
ଫୁଟାଇ ହାସ୍ୟ ଲପନେ ।

# ରାଣୀ ଦୁର୍ଗାବତୀ

କମଳିନୀ ଧନ—　　　　ଜଗତ-ନୟନ
ତପନ ଗତ ପ୍ରଖର,
ଚଞ୍ଚଳ ଧାବନେ　　　　ପହଞ୍ଚିଲେ ଆସି
ଅସ୍ତ ଶଇଳ ଶିଖର ।
ତପତ କାଞ୍ଚନ　　　　ଆଭ୍ରମୟ ମୁଖେ
ଅନାଇ ବାରୁଣୀ ରାଣୀ,
ଲାଜ ଲାଜ ହୋଇ　　　　ଦରହାସ ମୁଖେ
ଧଇଲା ତପନ ପାଣି ।
ଅପଲକ ନେତ୍ରେ　　　　ଅନାଇଲା ଧନୀ
ପ୍ରଣୟ-ଦୁଆର ଫେଇ,
ରସରାଜ ସେହି　　　　ନାଗର ତପନ
ନୟନେ ନୟନ ଦେଇ ।
ବିନୟପୂରିତ　　　　ଲଳିତ କଣ୍ଠେ ଲୋ
ବୋଇଲା ସରାଗେ ବାଣୀ,
"ଆସ ଆସ ମୋର　　　　ପ୍ରଣୟଦେବତା
ଗୃହିଁଛୁ ତବ ସରଣୀ ।
ତବ ପାଇଁ ଏକା　　　　ସାଜିଛୁ ବନ୍ଧୁ ହେ !
ବାରୁଣୀ-ରକ୍ତ-ଭବନ,
ଉଚ୍ଛ୍ୱସିତ ପ୍ରାଣେ　　　　ପ୍ରଣୟ ପୁଲକେ
ପୂଜିବ ବୋଲ୍ ଚରଣ ।

# ତୃତୀୟ ତରଙ୍ଗ

ବିଳମ୍ବ ନ କର                ଆସ ତ୍ୱରା ବନ୍ଧ
ପଛକୁ ଗୃହଁ କପାଇଁ,
ଗୁପତ ଭୁବନେ                ଲୁଚୁଇବା ଶଶୀ
ଦେଖି ତ ପାରିବେ ନାହିଁ ।"
ଏହା ଶୁଣି ଦେବ                ହରଷ ଅନ୍ତରେ
ଧୀର ମଧୁର ବଚନେ,
କୋମଳ ବଦନେ                ଚୁମ୍ବନ ବାହିଲେ
ଆଲିଙ୍ଗି ବାହୁ ବନ୍ଧନେ ।
ତପନ ଚୁମ୍ବନେ                ସୁନ୍ଦରୀ ଲପନେ
ଫୁଟିଲା ରାଗ-ରକତ,
ଏ' ମଧୁ ମିଳନ                ଅନାଇଁ ହସିଲା
ହରଷେ ସାରା ଜଗତ ।
ପରାଚୀ ଗଗନେ                ମୁଖ ଟେକି ବଧୂ
ଛଟକେ ଦେଲେ ଅନାଇଁ,
ବାରୁଣୀ ରାଣୀଙ୍କି                କୋଳେ ଧେନାଛନ୍ତି
ସରାଗେ ଦିବସ ସାଇଁ ।
ହସି ହସି ପୁଣି                ଗୋଡ଼ାଇ ବସିଲେ
ଚଢ଼ି ମଣିମୟ ରଥେ,
ନିମ୍ନେ ହାସ୍ୟମୟୀ                ଉତ୍ସବ ସହସା
ପଡ଼ିଲା ନୟନପଥେ ।

ଅନାଇ ଦେଖିଲେ ଗୋପାଳପୁରର *
ମନ୍ଦିର ପ୍ରାଙ୍ଗଣ ପରେ,
ଅଭ୍ରମୟୀ ଏକ ଯୁବତୀ କର ଲୋ
ଶୋଭଇ ଯୁବକ କରେ ।
ଚକିତ ନୟନେ ଅନାଇ ରହିଲେ
ଭୁଲି ବାରୁଣୀ ଛପନେ,
ଏଣେ ଦନମଣି ପ୍ରିୟା ସଙ୍ଗେ ଧୀରେ
ଲୁଚିଲେ ରଙ୍ଗ ଭବନେ ।
ଦଲପତ ସଙ୍ଗେ ଦୁର୍ଗାବତୀର ଲୋ
ହୋଇଲା ମଧୁ ମିଳନ,
କି ଅବା ବରୁଣ- ଦୁହିତା ସହିତ
ବିଶ୍ୱପତି ନାରାୟଣ ।
ଅଥବା ନୀଳିମା ଗଗନେ ବାରିଦ—
କୋଳେ ଚପଳା ସୁନ୍ଦରୀ,
ମଣି ସଙ୍ଗେ ଅବା ହୀରକ ଜଡ଼ିତ
ଉଜ୍ଜ୍ୱଳ ମାଧୁରୀ ଧରି ।

---

* ନର୍ମଦା ନଦୀ ଅପର ପାଖ ଗୋପାଳପୁର ନାମକ ଗ୍ରାମର ଦେବ ମନ୍ଦିରଠାରେ ଦୁର୍ଗାବତୀଙ୍କର ବିବାହ ସମାହିତ ହୋଇଥିଲା ।

# ତୃତୀୟ ତରଙ୍ଗ

ବର କନ୍ୟା କର ସ୍ପରଶ ସଙ୍ଗେ ଲୋ
ଦୃଷ୍ଟି ହେଲା ବିନିମୟ,
ପୁଲକିଲା ଅଙ୍ଗ କୁମୁଦିନୀ ଯଥା
ନୀଳଘନେ ଚନ୍ଦ୍ରୋଦୟ ।
କି ଅବା ମଳୟ ପବନ ସ୍ପରଶେ
ମାଳତୀ କଳୀ-ସୁମନ,
ପ୍ରଣୟ ପ୍ରବାହେ ଥର ଥର ଅବା
ପୁଲକାଏ ଅପଘନ ।
କି ଏକ ଅଜ୍ଞାତ ଆନନ୍ଦ ଉତ୍ସାହେ
ପୂରିଲା ବେନି ହୃଦୟ,
ପ୍ରେମ-ପୂତ-ସ୍ରୋତେ ଯୁଗଳ କଲ୍ଲୋଳ
ହେଲା କିବା ବିନିମୟ ।
ଆପଣାକୁ ଭୁଲି ବେନିଏ ବେନିଙ୍କି
ଚହିଲେ ଧୀରେ ଅନାଇଁ,
ମୁହୂର୍ତ୍ତକ ଯାଏ ଗୃର ନୟନେ ଲୋ
ପଲକ ପଡ଼ିଲା ନାହିଁ ।
ନବୋଦିତ ଗୃରୁ ତପନେ ଯେସନ
ଗୃହିଁଥାଏ କମଳିନୀ,
ଅବା ପ୍ରେମମୁଗ୍‌ଧ ମୃଗ ନିରେଖିଲେ
ଚକିତା ଯଥା ମୃଗିଣୀ ।

# ରାଣୀ ଦୁର୍ଗାବତୀ

ଶୁଭ ମୁହୂର୍ତ୍ତିରେ                    ପରିଣୟବିଧି
ସମ୍ପନ୍ନ ହେଲା ସତ୍ୱରେ,
ଭବନ ବିପିନ                    ଗଗନ କମ୍ପିଲା
ବିବାହ-ବାଦ୍ୟନାଦରେ ।
ଶୁଭ ଶଙ୍ଖ ସହ                    ସମସ୍ୱରେ ଭାଟେ
ଗାଇଲେ ବିବିଧ ଗାନ,
ଲଲନା-ଲଳିତ—                    କଣ୍ଠ ହୁଳହୁଳି
ଧରିଲା ତା' ପ୍ରତିତାନ ।
କୁଳ କାମିନୀଏ                    ଏକେ ଏକେ ଆସି
ବନ୍ଦାପନାବିଧି କରି,
ଅତି ସମାଦରେ                    ଅନ୍ତଃପୁରେ ନେଲେ
ବର କନ୍ୟା ହାତ ଧରି ।
ଫୁଟିଗଲା ନବ—                    ଆନନ୍ଦ-ସୁମନ
ରାଜ୍ୟ-ବନ-ଉପବନେ,
ସରଗ ସୁଷମା                    ମରତେ ଭ୍ରମିଲା
ମୃଦୁ ମନ୍ଦ ସମୀରଣେ ।
ମୁକ୍ତ ଆଜି ରାଜ-                    ଭଣ୍ଡାରଘର ଯେ
ଦୁହିତା ବିବାହ ପାଇଁ,
ଦୀନ ରଙ୍କ ଚିର—                    ଦରିଦ୍ର ସରବେ
ମୁଦେ ଆସୁଛନ୍ତି ଧାଇଁ ।

# ତୃତୀୟ ତରଙ୍ଗ

ଭିକ୍ଷୁକ ଅହାର  ରଙ୍କ ଘରଧାନ
ଦରିଦ୍ର ପାଇଲେ ଧନ,
ବେଜନ ହସ୍ତ ତୋଳି  ଲଳିତେ ଗାଇଲେ
ଜୟ ହେ ଶାଳୀବାହନ ।
ଶାଶୁ ଶ୍ୱଶୁରଙ୍କ  ଚରଣେ ପ୍ରଣମି
ଦନେ ଗଡ଼ ଯୁବରାଜ,
ବିନୟେ ବୋଇଲେ  "ବିଦାୟ ଦିଅନ୍ତୁ
ରାଜ୍ୟେ ଯିବୁଁ ମହାରାଜ !"
ଏହା ଶୁଣି ତହୁଁ  ଶାଳୀବାହନ ଲୋ
କଲେ ନାନା ଅୟୋଜନ,
ଧନ ଜନ ଆଦ  ଯଉତୁକ କଲେ
ଜାମାତା କରେ ଅର୍ପଣ ।
ଦୁର୍ଗାବତୀ ମୁଖ  ଚୁମ୍ବି ଜନନୀ ଲୋ
ଲୋତକପୂର୍ଣ୍ଣ ନୟନେ,
ବାସ୍ପରୁଦ୍ଧ କଣ୍ଠେ  ବୋଇଲେ "ମାଆ ଲୋ
ଯାଉଛୁ ପତିଭବନେ ।
ଆଜଠାରୁ ମାଆ  ମମତାମଖା ଏ
ସୁଧାଂଶୁ-ସୁଧା-ଲପନ,
ଲବଣ୍ୟବୋଳା ଏ  ମୂରତ ଆଉ କି
ଦେଖିବ ନାହିଁ ନୟନ ।

# ରାଣୀ ଦୁର୍ଗାବତୀ

ହରଷ ବଦନେ ଯାଅ ଲୋ ତନୟା
କାନ୍ଦିବୁ ନାହିଁ ଗୋ ଲବେ,
ପତିଘର ଠାରୁ ବଳି ନାରୀଙ୍କର
ପୁଣ୍ୟତୀର୍ଥ ନାହିଁ ଭବେ ।
ଶାଶୁଙ୍କୁ ତୋହର ଜନନୀ ପରି ଲୋ
ସେବୁଥିବୁ ସବୁ ଦିନ,
ଦୋଷ ଦେଖି କେବେ କୋପିବେ ଯଦ୍ୟପି
ନ ହୋଇବୁ ମନେ କ୍ଷୁଣ ।
ବରଗିବେ ଯଦି କରମ ଧରମ
ମାନିବୁ ନୁଆଇଁ ମଥା,
ଜ୍ଞାନେ ବା ଅଜ୍ଞାନେ ଭରମେ ଭୁଲି ଲୋ
ନ କହିବୁ କଟୁ କଥା ।
ଗୁରୁଜନ ପଦ ଦେବତା ପରାଏ
ସେବା କରୁଥିବୁ ସଦା,
ଭବେ ବା ଅଭବେ ସମ୍ପଦେ ବିପଦେ
ମାନ ନ କରିବୁ କଦା ।
ପତିଠାରୁ ବଳି ନାରୀମାନଙ୍କ ଲୋ
ଦ୍ୱିତୀୟ ଠାକୁର ନାହିଁ,
ପତି ଚରଣରେ ସେବା କରୁଥିଲେ
ସକଳ ସମ୍ପଦ ପାଇ ।

# ତୃତୀୟ ତରଙ୍ଗ

ପତି ତୋର ଧର୍ମ  ପତିହିଁ କରମ
ସେ ଏକା ହୃଦୟ-ଧନ,
ଜଳ ମୁଖେ ସଦା  ଢେଜନରୁ ନାହିଁ ଲୋ
ନ ପୂଜ ପତିଚରଣ ।
ପତିଚରଣକୁ  ଛାଡ଼ି ଯାହାର ଲୋ
ଅନ୍ୟ ଧର୍ମେ ମନ ଯାଏ,
ପୁଣ୍ୟକଥା ଦୂରେ  ଥାଉ ଲୋ ନନ୍ଦିନି !
ପାପଫଳକୁ ସେ ପାଏ ।
ଲଭନ୍ତି ଯେ ପୁଣ୍ୟ  ଲଳନା ଅରପି
ପତିଚରଣେ ଭକତି,
ଘୋର ବନେ ତପ  ଆଚରି ସେ ପୁଣ୍ୟ
ପାଇ ନ ପାରନ୍ତି ଯତି ।
ନାରୀଙ୍କ ଲାବଣ୍ୟ  ଧରମ ଏକା ଗୋ
ପତିପଦ ଆଭରଣ,
ଧରମ ତାହାର  ଅମୂଲ୍ୟ ସମ୍ପତ୍ତି
ଧର୍ମହିଁ ଅବଗୁଣ୍ଠନ ।
ଧରମ ବିହୀନେ  ଅବଗୁଣ୍ଠନର
ନ ଥାଏଟି କିଛି ମୂଲ,
ଅସୁନ୍ଦର ଦିଶେ  ଖଞ୍ଜିଲେ ଯଥା ଲୋ
ଶୁଖିଲା ଗଛରେ ଫୁଲ ।

ଜାଣିବୁ ନନ୍ଦନ !                ହୃଦୟ ପୁରରେ
ଧରମ ରକ୍ଷକ ସିନା,
ଅଗାଢ କବଚ                ଆନ କେ ରଖିବ
ବିବେକ ପ୍ରହରୀ ବିନା ।
ସାଧୁ ସାହସ ଲେ                ଯୋଗ୍ୟ ଅସ୍ତ୍ର ସିନା
ଲଜ୍ଜାହିଁ ଏକା ବସନ,
ପତିଚରଣରେ                ପବିତ୍ର ଭକତି
ରମଣୀ-ଅବଗୁଣ୍ଠନ ।
ଦାସ ଦାସୀଙ୍କୁ ଗୋ                ଦେଖୁଥିବୁ ସଦା
ସନ୍ତାନ ସନ୍ତତି ପରି,
ମନ କାଳ ଜାଣି                ଖାଦ୍ୟ ଦେଉଥିବୁ
ଦୟାଭାବ ହୃଦେ ଧରି ।
ଜଗିଥିବୁ ସଦା                ନ ଫେରିବେ ଘରୁ
ନିରାଶେ ଯାଚକଗଣ,
ଭିକ୍ଷା ଦେବୁ ଯଥା                କାଳ ଜାଣି ଘନ
ଜଳ କରେ ବରଷଣ ।
ଆଉ କି ଅଧିକ                କହିବି ନନ୍ଦନ !
ଯାଅ ମୋ ହୃଦୟଧନ,
ଗୃହସ୍ଥ ଧରମେ                ଆଲୋକିତ କର
ଭାରତ-ନବ-ଭବନ ।”

# ତୃତୀୟ ତରଙ୍ଗ

ଛଳ ଛଳ ନେତ୍ରେ          ଭରି ନିଶ୍ୱାସେ ଲୋ
ଜନନୀ ପୂତଚରଣେ,
ବିଦାୟ ଘେନଲେ          ଧୀରେ ଦୁର୍ଗାବତୀ
ପ୍ରଣମି ଭକତ ମନେ ।
ସାଙ୍ଗ ସଖୀଗଣ          ଲୁହ ପୋଛୁ ପୋଛୁ
ଧରି କେମାମଣି କର,
ଦୁଃଖିତ ମାନସେ          ବସାଇଲେ ନେଇ
ସୁବର୍ଣ୍ଣ-ଶିବିକା ପର ।
ପୁରୋହିତଗଣ          ଲଳିତ କଣ୍ଠେ ଲୋ
କଲେ ମନ୍ତ୍ର ଉଚ୍ଚାରଣ,
ହୁଳହୁଳି ସଙ୍ଗେ          ଯୋଗ ଦେଲା ଆସି
ଶଙ୍ଖର ଗମ୍ଭୀର ସ୍ୱନ ।
ଶିବିକା ପଶ୍ଚାତେ          ଯାଆନ୍ତି ବର ଲୋ
ମାତଙ୍ଗ ଉପରେ ବସି,
ସ୍ୱର୍ଣ୍ଣଜଡ଼ିତ          ଶିରସ୍ତ୍ରାଣ ରବି-
କରେ ଉଠଇ ଝଲସି ।
ଏକମେଳ ହୋଇ          କାମିନୀଗଣ ଲୋ
ଚାଲନ୍ତି ଶିବିକା ସଙ୍ଗେ,
ଗଗନ ବିରଜି          ଶତ ଇନ୍ଦ୍ରଧନୁ
ଖେଳେ କି ମରତେ ରଙ୍ଗେ ।

# ରାଣୀ ଦୁର୍ଗାବତୀ

ଅଗ୍ରେ ସୁସଜ୍ଜିତ ସେନାନୀ ସଙ୍ଗେ ଲେ
ଋଲେ ବନ୍ଧାପନା ଭାର,
ପଥ ବେଣ ପାର୍ଶ୍ୱେ ଚୂତପତ୍ର ମାଳ
ଲମ୍ବିଛି କୁସୁମ ହାର ।
କୋଳାହଳପୂର୍ଣ୍ଣ ମାନବ ଗହଳ
ଦିଶଇ ସାଗର ପରି,
ଶୁଭ୍ର ଶିରସ୍ତ୍ରାଣ ନରଶିର ଅବା
ଫେନିଲ ତୁରଙ୍ଗ ଲହରୀ ।
ନଗରର ସୀମା ଲଙ୍ଘି ଯେତେବେଳେ
ଗଲେ ବରଯାତ୍ରୀ ଦଳ,
ମହୋବା ଭୂପତି ସ୍ନେହେ ଜାମାତାଙ୍କ
ଧରିଲେ କର ଯୁଗଳ ।
ଛଳଛଳ ନେତ୍ରେ ଭାଷିଲେ ବଚନ
ପରାଣ ବିଷାଦଭରେ,
"ହୃଦୟ କଳିକା ଏକଇ କୁମାରୀ
ଅରପିଲି ତବ କରେ ।
ସାମାନ୍ୟ ବାଳିକା ନ ଜାଣଇ କିଛି
କରିବ ଯେବେ ବା ଦୋଷ,
ନିଜ କ୍ଷମାଗୁଣେ କ୍ଷମିବ ବତ୍ସ ହେ
ନ ବହି ହୃଦୟେ ରୋଷ ।

# ତୃତୀୟ ତରଙ୍ଗ

ସଦୟ ଅନ୍ତରେ ନବବଧୂ ପ୍ରତି
ସ୍ନେହଦୃଷ୍ଟି ଥିବ ରଖି,
ହୃଦୟ ଉତ୍କଣ୍ଠା ଦୂର କରୁଥିବ
ଅବସରେ ପତ୍ର ଲେଖି ।”
ଏହା କହି ତହୁଁ ବରଷ ଅନ୍ତରେ
ବିଦାୟ ନେଲେ ରାଜନ,
ବରଯାତ୍ରୀଦଳ ନିଜଦେଶ ମୁଖେ
ସଧୀରେ କଲେ ଗମନ ।

---

# ଚତୁର୍ଥ ତରଙ୍ଗ



**ବୀ**ରପ୍ରସବିନୀ ସିଙ୍ଗୁର ଗଡ଼ ଲୋ
ଭାରତେ ନଗଶ୍ରୀସାର,
ଚଉପାଶେ ଯାର ବେଢ଼ି ରହିଅଛି
ଉନ୍ନତ ନଗ-ପ୍ରାକାର୍ ।
ନର୍ମଦା ବହୁଛି ମଧୁର ସଙ୍ଗୀତେ
ତୋଷି ତାର କର୍ଣ୍ଣ ବେନି,
ଚିର-ହାସ୍ୟମୟୀ ପ୍ରକୃତ ରାଜଇ
ଅପୂର୍ବ ସୁଷମା ଘେନି ।

## ଚତୁର୍ଥ ତରଙ୍ଗ

ତା' ମଧ୍ୟେ ବିରାଜେ          ନାନା ଆରମ୍ଭର୍ଯ୍ୟେ
ପ୍ରକାଣ୍ଡ ରାଜଭବନ,
ଶତ୍ରୁଦର୍ପହାରୀ          କେତନ ଯାହାଙ୍କ
ଚୁମ୍ବଇ ନୀଳ ଗଗନ ।
ସ୍ୱର୍ଣ୍ଣକୁମ୍ଭଶିର          ଦେବାଳୟଗଣ
ଚୌଦିଅଡ଼େ ବେଢ଼ିଛନ୍ତି,
ସୁନୀଳ ଗଗନେ          ଚନ୍ଦ୍ରକୁ ଯେସନ
ତରଳ-ତାରକାପନ୍ତି ।
ଭୂପତି ଭବନ          ରାଣୀହଂସପୁର
ଶୋଭାସମ୍ପଦରେ ଭରା,
ବଇକୁଣ୍ଠବାସୀ          ଥରେ ଦେଖିଲେ ଲୋ
ନାଷ୍ଟସ୍ତୁ ଇଚ୍ଛିବେ ଧରା ।
ଶ୍ୱେତ ମରମର          ରକ୍ତିମ ପାଷାଣେ
ନିର୍ମିତ କେତେ ଭବନ,
କାରୁ ଖଞ୍ଜା ସ୍ତମ୍ଭ          ସଙ୍ଗେ ନାନା ରଙ୍ଗେ
ଶୋଭଇ ଗୃହ ପ୍ରାଙ୍ଗଣ ।
ନାନା ରଙ୍ଗେ ଭରା          ବିଚିତ୍ର ଚିତ୍ର ଲୋ
ଯେଉଁ ଶୋଭେ ଗୃହ-ଭିତ୍ତି,
ବୃନ୍ଦାବନ ଘନ-          ନିକୁଞ୍ଜ କାନନେ
ରାଧା ସଙ୍ଗେ ଗୋପୀନାଥ ।

# ରାଣୀ ଦୁର୍ଗାବତୀ

କାହିଁ ପଞ୍ଚବଟୀ    କୁଟୀର ପ୍ରାଙ୍ଗଣେ
ଜଟୁବେଣୀ ବଂଶପାଣି,
ଫଳ ମୂଳ ଭିକ୍ଷା-    ପାନ୍ଥ ସଙ୍ଗେ ବଳେ
ଧରିଛୁ ଜାନକୀପାଣି ।
ସୁବର୍ଣ୍ଣ ପିଞ୍ଜରେ    ଶୁକ ସାରୀ ବଣି
ସୁକଣ୍ଠ-ବନ-ବିହଙ୍ଗ,
ରାଜ ଅନ୍ତଃପୁର    ପୂର୍ଣ୍ଣ କରିଛନ୍ତି
ପ୍ରସାରି ସ୍ୱର-ତରଙ୍ଗ ।
ଏହାପରି ଶୋଭା—    ମର୍ତ୍ତୀ ଅନ୍ତଃପୁର
ପବିତ୍ର ହୋଇଛୁ ଆଜି,
କମଳାରୂପିଣୀ—,    ମହୋବାନନ୍ଦିନୀ—
କମଳ-ଚରଣ ବାଜି ।
ଉଜ୍ଜ୍ୱଳ ଦିଶଇ    ଧାରା ଯଥା ବିଦ୍ୟୁ
ସ୍ଫୁରିଲେ ନୀଳ ଗଗନେ,
ଅଲୋକିତ ତଥା    ରାଜଭବନ ଲୋ
ନବବଧୂ ଆଗମନେ ।
ଦୁର୍ଗାବତୀ ପ୍ରେମ—    ମନ୍ଦାକିନୀ ଗର୍ଭେ
ଯୁବରାଜ ଦଳପତି,
ପୁଲକିତ ପ୍ରାଣେ    ପବିତ୍ର ଅନ୍ତରେ
ବୁଡ଼ିଛନ୍ତି ଅବିରତ ।

# ଚତୁର୍ଥ ତରଙ୍ଗ

ଲାବଣ୍ୟ ମୂରତି          ସଦା ହାସ୍ୟମୟୀ
ରାଜଜେମା ବିମ୍ବାଧରୀ,
କାୟା ଛାୟା ପରି          ପତିଗହଣେ ଲୋ
ସର୍ବଦା ଥାଏ ସୁନ୍ଦରୀ ।
ତଟିନୀ ଯେସନ          ଉଚ୍ଛ୍ୱସିତ ପ୍ରାଣେ
ସାଗରେ ଢାଳଇ ଅଙ୍ଗ,
ଦୁର୍ଗାବତୀ ତଥା          ଅମ୍ବ ବସ୍ତୁରଇ
ଲଭି ନବ ପତିସଙ୍ଗ ।
ପତିହୃଦୟରୁ ଲୋ          ପଲ୍ଲବ ଉଠିଲା
ମଞ୍ଜୁଳେ ତରୁ ପ୍ରଣୟ,
ପତ୍ନୀହୃଦେ ପ୍ରେମ—          ଲତିକା ସୁମନେ
ଦିଶିଲା ସୁଷମାମୟ ।
ଦିନୁ ଦିନୁ ବେନି          ବେନିଙ୍କି ସରାଗେ
ବାନ୍ଧିଲେ ପ୍ରେମ-ବନ୍ଧନେ,
ଦୃଢ଼ ଦୃଢ଼ତର          କଲେ ବନ୍ଧନ ଲୋ
ଅନୁରାଗ ଅଣି ମନେ ।
ଏ ପୁଣ୍ୟପ୍ରତିମା          ହୃଦୟେ ଧରି ଲୋ
ମନେ ମନେ ରାଜସୁତ,
ଭାବୁଥିଲେ ଏହା          ପୂର୍ବ ତପସ୍ୟାରୁ
ହୋଇଛୁ ସିନା ସମ୍ଭୂତ ।

# ରାଣୀ ଦୁର୍ଗାବତୀ

'ହେ ବିଶ୍ୱଜନକ ତବ ପଦତଳେ
ଏତିକି ମାତ୍ର କାମନା,
ଯୁଗେ ଯୁଗେ ବକ୍ଷେ ବସିଥାଉ ଏହି
ପବିତ୍ରମୟୀ ଲଳନା ।'
ଜେମା ଭାବୁଥିଲେ 'ଏହି ମୋର ବର
ହୃଦୟ ଅମୂଲ୍ୟ ଧନ,
ଇହ ପରକାଳ ଉଭୟ ଜନମେ
ଦାସୀର ଅବଲମ୍ବନ ।
ମୁଁ ଅଟେ ସରସୀ— ଫୁଲ୍ଲ କୁମୁଦିନୀ
ଏ' ସିନା ସରଗ-ଇନ୍ଦୁ,
ମୁଁ ଅଟେ ମର୍ତ୍ତ୍ୟର ଭଗ୍ନ ତଟିନୀ ଲୋ
ଏ' ସିନା ପ୍ରଣୟ-ସିନ୍ଧୁ ।
ଏ' ଅମୃତମୟ ଗୁରୁ ଚରଣ ହେ
ହେଉ ମୋ ହୃଦ ସମ୍ବଳ,
ଜୀବନେ ମରଣେ ଅଟଇଟି ଯାହା
ଅବଳାର ଚିର ବଳ ।
ଏ' ପଦ-ତପନ ମୋ' ମନ କମଳ
କରୁ ସଦା ଆଲୋକିତ,
ଅଙ୍ଗେ ଝେଳିଯାଉ ପୁଣ୍ୟ ଜ୍ୟୋତିଃଧାର
ଜୀବନ ହେଉ ପବିତ୍ର ।'

# ଚତୁର୍ଥ ତରଙ୍ଗ

ପ୍ରେୟସୀ ପବନ ତରଳ ଲଳିତ
ଗାମ୍ଭୀର୍ଯ୍ୟମୟୀ ମୂରତି,
ନିରେଖି ଚକିତ ରାଜକୁମର ଲୋ
ମୁଖେ ନ ଫୁଟେ ଭାରତୀ ।
ମୃଦୁହାସ୍ୟ ପରେ ପ୍ରଫୁଲ୍ଲ ଅନ୍ତରେ
ବନିତା ବସାଇ ପାଶେ,
କର ଧରି ପ୍ରେମ— ପୁଲକିତ ପ୍ରାଣେ
ଭାସିଲେ ବାଣୀ ହରଷେ ।
"ଆଜଯାଏ ତୁମ୍ଭେ ଦେବୀ କି ମାନବୀ
ଚିହ୍ନି ତ ପାରିଲି ନାହିଁ,
ପରୀରୂପେ କେଉଁ ଦେବବାଳା ଅବା
ଅସିଛ ଛଳିବା ପାଇଁ ।
ଯେ କେହି ହୁଅ ଗୋ ତୁମେ ଏକା ମୋର
ବିଜୁଳି ହୃଦୟ-ଘନେ,
ତୁମ୍ଭ ପରି ପ୍ରେମ ପିତୁଳା ଲଭି ଗୋ
ଭାଗ୍ୟବାନ ସଦା ମଣେ ।"
ଏହା କହି ପ୍ରେମ— ପୁଲକ ପରଶେ
ଧଇଲେ ଆକର୍ଷି କୋଳେ,
ବାହୁପାଶେ ବାନ୍ଧି ଚୁମ୍ବନ ବହିଲେ
କୋମଳ-ଗୁରୁ-କପୋଳେ ।

# ରାଣୀ ଦୁର୍ଗାବତୀ

ପଡ଼କୋଳେ ବସି　　　ଲକେ ସୁନ୍ଦରୀର
ଥରଗଲା ଅପଘନ,
ଲାଜ-ରାଗ-ରଞ୍ଜା　　　ବଦନ କଲା ଲୋ
ଅପୂର୍ବ ଶୋଭା ଧାରଣି ।
ସେ ଶୋଭାସମ୍ପଦେ　　　ଅପଲକ ନେତ୍ରେ
ଚୁହିଁଥିଲେ ଦଲପତ,
କମଳ-ବଦନ　　　ମଧୁର ମାଧୁରୀ
ପରାଣି କଲା ତୃପତ ।
କେବେ କେବେ ନବ　　　ତରୁଣ ସରାଗେ
ଯେଜନ ତରୁଣୀ ଗହଣେ,
ଭ୍ରମୁଥିଲେ ଫୁଲ୍ଲ　　　ଫୁଲ୍ଲମୟୀ ରାଜ—
ଅନ୍ତଃପୁର ଉପବନେ ।
ଗୋଲାପ ମାଳତୀ　　　ଚମ୍ପା କଣିଅର
ତୋଳି ଅତି ହରଷରେ,
ସୁକୁମାରୀ ଗୁରୁ-　　　କବରୀ ଉପରେ
ସଜାଉଥିଲେ ଆଦରେ ।
ନିଶାମୁଖେ ଦନେ　　　ବହୁ ଆସୁଥିଲା
ମୃଦୁଲ ମନ୍ଦ ପବନ,
ନିର୍ମଳ ଗଗନୁ　　　ଝରି ପଡୁଥିଲା
ସୁଧାଂଶୁ-ସୁଧା-କିରଣ ।



"ଗଗନେ ଚନ୍ଦ୍ରମା ହସଇ କେସନ
ତୁହିଁ ମୋ ହୃଦୟ-ରାଣି ।"

ପୃ ୫୭ ଦ୍ରଷ୍ଟା

## ଚତୁର୍ଥ ତରଙ୍ଗ

ଦୁର୍ଗାବତୀ କର          ଧରି ଦଳପତି
ମିଳିଲେ ପ୍ରମୋଦବନେ,
ବସିଲେ ବେନିଏ          ଚନ୍ଦ୍ର-କର-ଧୌତ
ବାଲୁକାମୟ ଆସନେ ।
ଦଳପତି ତହୁଁ          ବଧୂକର ଧରି
ଲଳିତେ ବୋଇଲେ ବାଣୀ,
ଗଗନେ ଚନ୍ଦ୍ରମା          ହସଇ କେସନ
ଗ୍ରହ ମୋ ହୃଦୟ-ରାଣୀ ।
ଏପରି ଚନ୍ଦ୍ରିକା          ନିଶାରେ ଧନେ ଗୋ
ବୃନ୍ଦାବନ ଘନ ବନେ,
ରାଧା ପ୍ରେମେ ବାଇ          ଗୋପୀଜନୋଦ୍ଧର
ଭ୍ରମିଲେ ଅତୁର ମନେ ।
ବୁଲି ବୁଲି ପୁଣି          ଯମୁନା ପୁଳିନେ
ସଙ୍ଗେ ମିଳିଲେ ଯାଇ,
ଦେଖିଲେ ପଡ଼ିଛି          ସୁମନମାଳା ଗୋ
ଆଣିଲେ ଧୀରେ ଗୋଟାଇ ।
ବୃଷଭାନୁ ଜେମା          ଲଳିତ କବରୀ—
ଚ୍ୟୁତ ଏ' କୁସୁମହାର,
ବୋଲି ଆନନ୍ଦିତେ          ଲମ୍ବାଇଲେ ନେଇ
ଆପଣା ଗଳା ଉପର ।

# ଚତୁର୍ଥ ତରଙ୍ଗ

ଦୁର୍ଗାବତୀ କର    ଧରି ଦଲପତି
ମିଳିଲେ ପ୍ରମୋଦବନେ,
ବସିଲେ ବେନିଏ    ଚନ୍ଦ୍ର-କର-ଧୌତ
ବାଲୁକାମୟ ଆସନେ ।
ଦଲପତି ତହୁଁ    ବଧୂକର ଧରି
ଲଳିତେ ବୋଇଲେ ବାଣୀ,
ଗଗନେ ଚନ୍ଦ୍ରମା    ହସଇ କେସନ
ଚୁହଁ ମୋ ହୃଦୟ-ରାଣୀ ।
ଏପରି ଚୁନ୍ଦମୀ    ନିଶାରେ ଦିନେ ଗୋ
ବୃନ୍ଦାବନ ଘନ ବନେ,
ରାଧା ପ୍ରେମେ ବାଇ    ଗୋପବନୋଦ୍ୟ
ଭ୍ରମିଲେ ଅତୁର ମନେ ।
ବୁଲି ବୁଲି ପୁଣି    ଯମୁନା ପୁଳିନେ
ସର୍‌ଗେ ମିଳିଲେ ଯାଇ,
ଦେଖିଲେ ପଡ଼ିଛି    ସୁମନମାଳା ଗୋ
ଅଣିଲେ ଧୀରେ ଗୋଟାଇ ।
ବୃଷଭାନୁ ଜେମା    ଲଳିତ କବରୀ—
ଚ୍ୟୁତ ଏ' କୁସୁମହାର,
ବୋଲି ଅନନ୍ଦିତେ    ଲମ୍ବାଇଲେ ନେଇ
ଅପଣା ଗଳା ଉପର ।

# ରାଣୀ ଦୁର୍ଗାବତୀ

ଦୂର ଅରଣ୍ୟ ଗୋ          ତରୁଣିରେ ଶୁଣି
ଚକୋରୀ କରୁଣ ସ୍ୱନ,
ମୋ ରାଧା ଡାକଇ          ବୋଲି ତରଛରେ
ସେ ବେଗେ କଲେ ଧାବନ ।
ପ୍ରବେଶି ଯେ ସ୍ଥଳେ          ଦେଖିଲେ ନାହିଁ ଗୋ
ବୃଷଜେମା ସୁକୁମାରୀ,
ନୀରାଶ ଅନ୍ତରେ          ଢଳି ପଡ଼ିଲେ ସେ
ବକ୍ଷଦେଶେ କର ମାରି ।
ଦେଖିଲ ସୁନ୍ଦରୀ !          ନାରୀ ହୃଦୟ ଗୋ
ବଜ୍ରହୁଁ ଅତି କଠିନ,
ନିଶ୍ଚିନ୍ତେ ରାଧିକା          ନିଦ୍ରିତ ସଦନେ
ନାହିଁ ମନେ ଦୁଃଖଚିହ୍ନ ।
ଦୁର୍ଗାବତୀ ତହୁଁ          ଦରହାସ ମୁଖେ
ବୋଇଲେ "ରମଣୀ ମନ,
କୋମଳତା ସଙ୍ଗେ          ସମ ନୋହିବ ହେ
କେବେ ଶିରୀଷ ସୁମନ ।
ନାରୀହୃଦୟ ହେ          ନୁହଇ ବଜର
ସେ' ଯେ ମନ୍ଦାକିନୀଧାରା,
ନାରୀମନଠାରୁ          ମନ ନ ପାଇବ
ଖୋଜିଲେ ଜଗତ ସାରା ।

— ✻ —

# ଚତୁର୍ଥ ତରଙ୍ଗ

ଏମନ୍ତ ଗୃହଣୀ ନଗରେ ଦନେ ହେ
ରାଧିକା ଆପଣା ଘରେ,
ନଣ୍ଟିନ୍ଦ୍ର ମାନଙ୍କେ ନଦ୍ରା ଯାଇଥିଲ
କୋମଳ ବଛଣା ପରେ ।
ବୃନ୍ଦାବନସ୍ଥିତ ବଇଁଶୀ ବନ୍ଧୁ ହେ
ଶୁଭିଲ ବଇଁଶୀ ସ୍ୱନ,
'ରାଧା ରାଧା' ବୋଲି ଡାକିଲ ମୁରଲୀ
କନ୍ଦାଇ ସାରା ଅରଣ୍ୟ ।
ପବନ-ହିଲ୍ଲୋଳେ ରାଧା ରାଧା ଡାକ
ଆସିଲ ସବେଗେ ଧାଇଁ,
କୋମଳହୃଦୟା ରାଧା ଧନୀ ଆଉ
ସମ୍ଭାଳି ପାରିଲ ନାହିଁ ।
ଅଥୟେ ତରୁଣୀ ଉଚ୍ଛ୍ୱସିତ ପ୍ରାଣେ
ମିଳିଲ କାହ୍ନୁ ଗହଣେ,
ପ୍ରଣୟ-ମନ୍ତ୍ରରେ ନୟନ ଲୋତକେ
ପୂଜିଲ ଗୁରୁ-ଚରଣେ ।
ବେନି ବାହୁ ଟେକି ରାଧାପ୍ରାଣଧନ
ଧରି ତାଙ୍କୁ ସଯତନେ,
ଗୃହ୍ୟ ଭାଷା ଭଣି ବୁଲିଲେ ନେଇ
ବୃନ୍ଦାବନ ବନେ ବନେ ।

ନିବିଡ଼ ଅରଣ୍ୟେ ପ୍ରବେଶିଲେ ଯହୁଁ
ଗୋପଜଞ୍ଜାଳଅ ହର,
ରାଧା ଅତର୍କିତେ ପଳାଇଲେ କାହ୍ନୁ
ତାଙ୍କୁ ଏକାକିନୀ କରି ।
ଗଭୀର ନିଶୀଥେ କେହୁ ନାହିଁ ପାଶେ
କେବଳ ଭୀଷଣ ବନ,
ଯେଣିକି ଚାହିଁଲେ ବିଭୀଷିକା ଶବ
ହୃଦୟ କରେ କମ୍ପନ ।
କାନ୍ଦି କାନ୍ଦି ବାଳୀ ଆତୁରେ ଡାକଇ
ଗୋପୀନାଥ ନାମ ଧରି,
ଭୟବିହ୍ୱଳରେ ସର୍ବାଙ୍ଗରୁ ତାର
ଶ୍ରମଝାଳ ପଡ଼େ ଝରି ।
ସର୍ବଶେଷେ ରାଧା ନିରାଶ ହେଲା ହେ
କମ୍ପିଲା ତା' ନାରୀ ହିୟା,
ପଛପଟେ ଆସି ଚମକାଇ ଦେଲେ
କାହ୍ନୁ ଝାଡ଼ବନୋଦଅ ।
ତୁଟିଲା ଧଇର୍ଯ୍ୟ ପଡ଼ିଲା ସୁନ୍ଦରୀ
ମୂର୍ଚ୍ଛିତ ହୋଇ ଭୂତଳେ,
ପୁରୁଷ ପକ୍ଷରେ ପରିହାସ ଯାହା
ନାରୀ ଉଚନ୍ତେ ଅଶ୍ରୁଜଳେ ।

## ଚତୁର୍ଥ ତରଙ୍ଗ

ପୁରୁଷ ପ୍ରକୃତି କୁଳିଶ ସିନା ହେ
ଶକ୍ତି ନ ପାରନ୍ତି ନାରୀ,
ନୀରସ କଠିନ ମରୁମୟ ଦେଶେ
ନାରୀ ସିନା ସୁଧାବାରି ।
ନଳ ରାଜା ସଙ୍ଗେ ଦମୟନ୍ତୀ ସତୀ
ପତିପଦସେବା ପାଇଁ,
ହରଷ ଅନ୍ତରେ ଭ୍ରମିଲେ ଅରଣ୍ୟେ
ବନ ଫଳ ମୂଳ ଖାଇ ।
ଦାଶରଥି ସଙ୍ଗେ ବନବାସକାଳେ
ଜନକ ରାଜ ଦୁଲଣୀ,
ଦିନ ରାତି ନାହିଁ ପତିପଦେ ସଦା
ପଡ଼ି ତ ଥିଲେ ଧାରଣା ।
ପତି ଛଡ଼ା ଆଉ ଜାଣୁ ନ ଥିଲେ ସେ
ପତିଗତ ଏକା ପ୍ରାଣ,
ଫଳେ ତାଙ୍କ ପାଇଁ ବିରହ କଷଣ
ହୋଇଲା ପ୍ରତିବିଧାନ ।
ତଥାପି ସେମାନେ ମୁଖ ଫିଟାଇ ହେ
କହି ତ ନାହାନ୍ତି କଥା,
ଧରଣୀ ସମାନ ନୀରବେ ସମସ୍ତେ
ସହିଛନ୍ତି କେତେ ବ୍ୟଥା ।

# ରାଣୀ ଦୁର୍ଗାବତୀ

ରମଣୀ ନ ଜାଣେ ଧରମ କରମ
ପତି ଏକା ତାର ସାର,
ଶତ ସୂର୍ଯ୍ୟ ଥିଲେ ସୁଦ୍ଧା ପତି ବିନା
ସକଳ ତାକୁ ଅନ୍ଧାର ।
ଆଜୀବନ ସତୀ ହୃଦୟ-ଗଗନେ
ପୁଞ୍ଜୀଭୂତ ପ୍ରେମ-ଘନ,
ପତି ମନ ଜାଣି ବାରିଦାନେ କରେ
ପ୍ରେମ-ତୃଷ୍ଣା ନିବାରଣ ।
ସମ୍ପଦ ସମୟେ ପତି ପାଶେ ଥାଇ
ପ୍ରେମାଲୋକ ଧରି କରେ,
ଭରତା ପରାଣ ଆଲୋକିତ କରି
ସୁଖ ବିବରଧନ କରେ ।
ସମର ସମୟେ ଅଶାରୂପିଣୀ ସେ
ପତିହୃଦେ ବୀରାନଳ,
ଜାଳି ସଦା ସତୀ ମନାସୁଥାଏଟି
ପତିଙ୍କ ଚିର ମଙ୍ଗଳ ।
ବିପଦ ସମୟେ ପତିହୃଦୟେ ହେ
ଉଠିଲେ ବିଷାଦ-ଘନ,
ନାରୀପ୍ରୀତି ବାଣୀ ତପନ ପରାଏ
ଦୁଃଖ କରେ ବିମୋଚନ ।

# ଚତୁର୍ଥ ତରଙ୍ଗ

ସହସ୍ର ଯାତନା ପାଇଲେହେଁ ସତୀ
ପତି ପାଇଁ ପ୍ରାଣଦାନ,
ଅକାତରେ କରି ପାରେ ତା' ବଦଳେ
ନ ଗୃହେଁ ସେ ପ୍ରତିଦାନ ।"
ଏତେକ ଶୁଣି ଲେ ଦଳପତି ଧୀରେ
ଦୁର୍ଗାବତୀ କର ଧରି,
ବୋଇଲେ "ନ ଡର ନୁହଇ ମୁହିଁ ଗୋ
ନଳ ରାମଚନ୍ଦ୍ର ପରି ।
ନୁହଇ ମୁହିଁ ତ ଗୋପବନୋଦୟ
ତୁମ୍ଭଙ୍କ ପ୍ରମୋଦ-ବନେ,
ଛାଡ଼ ମୁଁ କଦାପି ପଳାଇବି ନାହିଁ
ଆଶଙ୍କା ନ କର ମନେ ।"
ତା' ପରେ ବେନି ଏ ହସା ହସି ହୋଇ
ଚଳିଲେ ଭବନ ମୁଖେ,
ଏଣେ ନିଶାପତି ବେନିଙ୍କି ଅନାଇ
ହସୁଥିଲେ ମନ ସୁଖେ ।

---

## ପ୍ରଥମ ତରଙ୍ଗ



ସିଙ୍ଗୁର ଗଡ଼ରେ ଦଳପତି ନାମେ
ଉଡ଼ଇ କୀର୍ତ୍ତି-କେତନ,
ପରଜା ଗଣଙ୍କୁ ତନୟ ପରି ସେ
କରନ୍ତି ସୁଖେ ପାଳନ ।
ଆଗରୁ ଅଧିକ ଧନ ଧାନ୍ୟେ ପୂର୍ଣ୍ଣ
ଭୂପତି-ଭଣ୍ଡାରଘର,
ନବ ତେଜେ ଆଜ ଦିଶୁଛି ରାଜଧାନୀ
ଧରଇ ମଞ୍ଜୁଳତର ।

## ପଞ୍ଚମ ତରଙ୍ଗ

ପରିପୂର୍ଣ୍ଣ ସୁଖେ ରାଜଦମ୍ପତି ଲୋ
ସୁଖ-ତରଙ୍ଗରେ ବସି,
ଦିବା ନିଶି ହୋଇ — ଥିଲେ ତହିଁ ସୁଖ-
ସୁଧା ପଡ଼ୁଥିଲା ଖସି ।
ତରଳ ତାରକା ପନ୍ତି ପନ୍ତି ହୋଇ
ଉଇଁ ମାନସ-ଗଗନେ,
ଦୁଃଖ-ତମ ନାଶି କ୍ଷୀଣ ଆଲୋକେ ଲୋ
ଝଟୁଥିଲେ ଅନୁକ୍ଷଣେ ।
କେବଳ ଶୀତଳ ଚନ୍ଦ୍ରିକା ପ୍ଲାବନେ
ଆସି ନାହିଁ ସୁଧାକର,
ଏଣୁ ଥରେ ଥରେ ରାଜା ରାଣୀଙ୍କ ଲୋ
ବିଷାଦ ଥିଲା ଅନ୍ତର ।
ଯାହାକୁ ନେଇ ଲୋ ସଂସାରେ ମାନବ
ମଣଇ ପରମ ସୁଖ,
ଯାହା ଅଭାବରେ ପରଲୋକେ ଭୋଗେ
ଘୋର ରଉରବ-ଦୁଃଖ ।
ସେହି ବିଶ୍ୱସାର ସନ୍ତାନ ସନ୍ତତି
ନାହାନ୍ତି ରାଜାଙ୍କ ଘରେ,
ଏଣୁ ରାଜରାଣୀ ଯାପନ୍ତି ଜୀବନ
ବିଷାଦଭରା ଅନ୍ତରେ ।

# ରାଣୀ ଦୁର୍ଗାବତୀ

ତନୟ ସିନା ଲୋ                    ଗୃହ ସାରଶୋଭା
ପରାଣର ପ୍ରିୟତମ,
ଶତ ତପସ୍ୟାର                    ମୋହନ ବିକାଶ
ଅନ୍ଧ ପକ୍ଷେ ଚକ୍ଷୁ ସମ ।
ସେ ଅମିୟ ମଖା                    ମାୟାର ପିତୁଳି
ଏତେ ଦିନ ରାଜ ଅଙ୍କ,
ଅଲୋକ ନାହିଁ ଲୋ                    ମଣ୍ଡି ନାହିଁ ପଦ୍ମ
ସଂସାର-ସରସୀ-ବକ୍ଷ ।
ଦାମ୍ପତ୍ୟ ଜୀବନେ                    ସେ ମହା ଅଭାବ
ଅସୀମ ଶୂନ୍ୟତା ମନେ,
ଭୋଗ କରି ବେଳା                    ବଞ୍ଚିତ ଥିଲେ ଲୋ
ତନୟ-ଶିର-ଚୁମ୍ବନେ ।
ବିଧି ଆଶୀର୍ବାଦୁ                    ସେ ମହା ଅଭାବ
ଶୂନ୍ୟତା ହୋଇଛି ଦୂର,
ସ୍ୱର୍ଗୁ ଦେବଶିଶୁ                    ଓହ୍ଲାଇ ଏବେ ଲୋ
ମଣ୍ଡିଛି ଭୂପତିପୁର ।
ଜୀବନର ସେହି                    ଅତୃପ୍ତ ବାସନା
କ୍ଷଣକେ ପୂରଣ କରି,
ସଂସାରେ ନନ୍ଦନ                    ମନ୍ଦାର ଫୁଟିଛି
ସ୍ୱର୍ଗୀୟ ମାଧୁରୀ ଧରି ।

## ପଞ୍ଚମ ତରଙ୍ଗ

ସେ ଶୋଭା ସୌରଭେ    ପବିତ୍ର ହୋଇଛି
ଅଜ ଭୂପତିଭବନ,
କୁଳ ରକ୍ଷା ହୋଇ    ଜନକ ଜନନୀ
ଜୀବନ ହୋଇଛି ଧନ୍ୟ ।
ରାଜଲକ୍ଷ୍ମୀ ଦୁର୍ଗା    ବତୀ ଏବେ ହେଲେ
ପ୍ରସନ୍ନମୟୀ ଜନନୀ,
ଯୌବନେ ପ୍ରସବି    ତପନ ପରି ଲେ
ସୁନ୍ଦର ତନୟମଣି ।
ପୁତ୍ରବତୀ ପ୍ରେମ    ଲାବଣ୍ୟ ମୂରତି
ସନ୍ମାନପୂର୍ଣ୍ଣ ନୟନେ,
ଅନାଇ ଭୂପତି    ଆନନ୍ଦ-ବିଦ୍ୟୁତ
ଖେଳାଇଲେ ହୃଦ-ଘନେ ।
ସଂସାର ଅଙ୍ଗନେ    ଗୃହସ୍ଥ ଧରମ
ଦିଶିଲା ମଧୁରମୟ,
ଆନନ୍ଦଧାମୁ ଲେ    ଅମର ସଙ୍ଗୀତେ
ଝରିଲା ଅମୃତ ଚୟ ।
ଉଇଁ ଆସୁଥିବା    ଚନ୍ଦ୍ରମା-ମୋହନ-
ପେଟିକା ଲୁଣ୍ଠନ ପାଇଁ,
କିଏ ଜାଣିଥିଲା    ସିଂହିକା-ନନ୍ଦନ
ଅଲକ୍ଷେ ଆସୁଛି ଧାଇଁ ।

# ରାଣୀ ଦୁର୍ଗାବତୀ

ଶିଶୁ ଜନ୍ମୋତ୍ସବ ପଞ୍ଚ ବର୍ଷ ପରେ
ଦିନେ ରାଜା ଦଲପତ,
କୋମଳ ଶରୀରେ ଜ୍ୱର ପ୍ରବେଶିଲେ
କଲା ତାଙ୍କୁ ଶଯ୍ୟାଗତ ।
ସେହି ଦିନକର ସାମାନ୍ୟ ଜ୍ୱର ଲେ
କ୍ରମେ ହେଲା ବରଧନ,
ଦିନୁ ଦିନୁ ରାଜା ମୁଖ ଚକ୍ଷୁ କଲା
ପାଣ୍ଡୁର ବର୍ଣ୍ଣ ଧାରଣ ।
ରୋଗବାଛଣାରେ ପଡ଼ି ରାଜନ ଲୋ
କ୍ରମେ ହେଲେ ହତଜ୍ଞାନ,
ରୋଗବଳେ ଥରେ ଥରେ ଚମକି ସେ
ଭାଷିଲେ ପ୍ରଳାପମାନ ।
ରାଜାଙ୍କ ଲକ୍ଷଣ ଦେଖି ରାଜବୈଦ୍ୟ
ପ୍ରମାଦ ଗଣିଲେ ମନେ,
କି ଏକ ଦାରୁଣ ବିଷାଦଚ୍ଛାୟା ଲୋ
ପଡ଼ିଲା ସର୍ବ ବଦନେ ।
ବିଭୀଷିକାମୟୀ ରାତି କ୍ରମେ ହେଲା
ଭୀଷଣୁ ଭୀଷଣତର,
ବିକଟ ଶବଦେ ଝଞ୍ଜା ପବନ ଲୋ
ବହିଲା ଥରକୁ ଥର ।

# ପଞ୍ଚମ ତରଙ୍ଗ

କେତେବେଳେ ଅବା          ଚକ୍ଷୁ ଝଲସାଇ
ବିଦ୍ୟୁତ ଖେଳିଲା ଘନେ,
'ହୁକେ ହୁକେ' ରବେ          ରାବିଲେ ଶୃଗାଳେ
ସୁଦୂର କେତକୀବନେ ।
ନୀରବ ନିଶ୍ଚଳ          ରାଜଭବନ ଲୋ
ନାହିଁ ପୂର୍ବ କୋଳାହଳ,
ଥରେ ଥରେ ମାତ୍ର          ରାବ ଦେଉଥିଲା
ପେଚକ ଭୀମ କରାଳ ।
ସେ ଘୋର ନିଶୀଥେ          ରାଜାଙ୍କ ଜ୍ଞାନ ଲୋ
ଆସିଲା କ୍ଷଣିକ ପାଇଁ,
ଜବାପୁଷ୍ପ ଜିଣି          ରକ୍ତ ଚକ୍ଷୁ ଫେଇ
ଗୃହଅଡ଼େ ଦେଲେ ଗୃହିଁ ।
ଅକୁଳେ ଯାହାକୁ          ଖୋଜୁଥିଲେ ନୃପ
ହୃଦୟେ ଉତ୍କଣ୍ଠା ଭରି.
ସେ ସତୀ ସୁନ୍ଦରୀ          ବସିଛନ୍ତି ପାଶେ
ପ୍ରସ୍ତର ପ୍ରତିମା ପରି ।
ତହୁଁ ରଜନ ଲୋ          ଦୁର୍ଗାବତୀ ମୁଖେ
ଚାହିଁଲେ ଧୀରେ ଅନାଇ.
ଏଣେ ଦୁର୍ଗାବତୀ          ଭୂପତି ନୟନେ
ନୟନ ଦେଲେ ମିଳାଇ ।

# ରାଣୀ ଦୁର୍ଗାବତୀ

ନୀରବ ନିଷ୍ପଳ ଚାରୁ ନୟନ ଲୋ
ଏକାଠି ହେଲା ମିଳନ,
କି ଏକ ଦାରୁଣ ବେଦନା ଉଚ୍ଛ୍ୱାସେ
ଲୋତକେ ହେଲା ପୂରଣ ।
କହିବି କହିବି ବୋଲି କାହାକୁ ଲୋ
କେହି ନ ପାରିଲେ କହି,
କମ୍ପିଲା ଅଧର ବିଷମ ଯାତନା
ହୃଦ ପକାଇଲା ଦହି ।
ମୁହୂର୍ତ୍ତକ ଯାଏ ବେନିଏ ବେନିଙ୍କି
ଲୋତକପୂର୍ଣ୍ଣ ନୟନେ,
ଅନାଇ ରହିଲେ କମଳିନୀ ଯଥା
ତପନେ ବାରୁଣୀ ଘନେ ।
ଦୁର୍ଗାବତୀ ଆଜ ସହି ନ ପାରିଲେ
ଦାରୁଣ ବେଦନଭାର,
ଗଣ୍ଡସ୍ଥଳ ପ୍ଳାବି ବିଶାଳ ନୟନ
ଢାଳିଲେ ଲୋତକଧାର ।
ସେହି ଅବସ୍ଥାରେ ତଥାପି ସୁନ୍ଦରୀ
ଧଇର୍ଯ୍ୟ କରି ଧାରଣ,
ହୃଦୟ ବେଦନା ହୃଦୟେ ମାରି ଲୋ
ଚାହିଁଲେ ପତି ଲପନ ।

# ପଞ୍ଚମ ତରଙ୍ଗ

ଦଲପତି ଏଣେ ସତୀ ହୃଦକଷ୍ଟ
ଅନୁଭବ କଲେ ମନେ,
ବୁଝିଲେ ନିଜର ସଂସାରଲୀଳା ଲୋ
ଶେଷ ହୋଇଯିବ କ୍ଷଣେ ।
ଧୀରେ ଧୀରେ ସତୀ କର ଧରି ରାଜା
ବକ୍ଷରେ ରଖିଲେ ଆଣି,
ଅତି କ୍ଷୀଣକଣ୍ଠେ ବୋଇଲେ ଭୂପତି
"କାନ୍ଦ ନା ଗୋ ରାଜରାଣି !
ଭୀଷଣ ପରୀକ୍ଷା ତବ ଭାଲପଟ୍ଟେ
ଆଗରୁ ଲେଖିଛନ୍ତି ବିଧି –
କିଏ ତା' ଅନ୍ୟଥା କରିବ ସୁନ୍ଦରି !
ଯାହା ସେ ଯାଇଛନ୍ତି ଲିଖି ।
ଏତିକି ହୃଦୟେ ମନେ ରଖ ପ୍ରିୟେ !
ଯେ ସହେ ସେ ଏକା ଧନ୍ୟ,
ସହିଷ୍ଣୁତା ଗୁଣେ ସତୀସମାଜେ ଗୋ
ନିଶ୍ଚୟ ହୋଇବ ଗଣ୍ୟ ।
ଜନକଜେମା ଗୋ ଦୁଃଖାନଳେ ସଦା
ଜଳିଛନ୍ତି ଆଜୀବନ,
ତେଣୁ ସିନା ଆଜି ମହିମା-ସୌରଭ
ବ୍ୟାପିଛି ସାରା ଭୁବନ ।

## ରାଣୀ ଦୁର୍ଗାବତୀ

ତବ ଜୀବନରେ ଅନେକ କର୍ତ୍ତବ୍ୟ
ବାକି ଅଛି ପ୍ରିୟତମେ !
ସହସ୍ତରେ ତା ହୃଦେ ସାର କର ଏବେ
ସହ ତା ନିଜ ଧରମେ ।”
ଏହି ଥର ଦେବୀ ଧଇର୍ଯ୍ୟ ହରାଇ
କାନ୍ଦିଲେ ଅତି ବିକଳେ,
କାନ୍ଦ କାନ୍ଦ ସ୍ୱରେ ବୋଇଲେ ବକ୍ଷ ଭିଜେ
ତନ୍ଦ୍ରାଳି ନୟନଜଳେ ।
“ଆତୁର ସହିବ ସହିବାକୁ ବାକି
ଆଉ କି ଅଛି ରାଜନ !
ସଂସାରେ ମୋହର କି କର୍ତ୍ତବ୍ୟ ଆଉ
ଛାଡ଼ି ତବ ଶ୍ରୀଚରଣ ।
ତୁମ୍ଭ ସେବା ବିନା ଅନ୍ୟ କର୍ତ୍ତବ୍ୟ ହେ
କେହି ତ ଶିଖାଇ ନାହିଁ,
ଆସିଛି କେବଳ ସଂସାରେ ତୁମ୍ଭର
ଚରଣ ସେବିବା ପାଇଁ ।
ତବ ଶ୍ରୀଚରଣ— ସେବା ବିନା ଆଉ
ନାହିଁ ଧରମ ଧିୟାନ,
ଏତିକି ଜାଣିଛି ତବ ସଙ୍ଗେ ହେବ
ଇହଲୀଳା ଅବସାନ ।”

## ପଞ୍ଚମ ତରଙ୍ଗ

ବୋଇଲେ ରାଜନ "ନାହିଁ ନାହିଁ ପ୍ରିୟେ !
ନ ଲଭ ହୃଦେ ଯାତନା,
ସହମରଣରେ ନ ବଳାଅ ମନ
ନୁହେ ମୋ ତାହା କାମନା ।
ଧରମପଥରେ ତୁମ୍ଭେହିଁ ସହାୟ
ଏହା ଭାବନ୍ତୁ ଗୋ ମନେ,
ପୂରାଇବ ତୁମ୍ଭେ ପୂର୍ଣ୍ଣ ହୋଇ ନାହିଁ
ଯାହା ମୋ ଇହ ଜୀବନେ ।
ଜୀବନସଙ୍ଗୀକି ବୀର ନାରାୟଣେ *
ସମର୍ପିଲି ତବ କରେ,
ନିଜ କୁଳ ଧର୍ମେ ଜୀବନ ଗଢ଼ିବ
ବଢ଼ାଇ ତାକୁ ଆଦରେ ।
ବିପୁଳ ସମ୍ପଦ ରାଜସିଂହାସନ
ତୁମ୍ଭଙ୍କୁ କର ଅର୍ପଣ,
ନିଶ୍ଚିନ୍ତ ମାନସେ ଚଳିଲି ସୁନ୍ଦରୀ !
ନିତ୍ୟ ଅମର ଭୁବନ ।
ଯାହା ଇଚ୍ଛା ତବ ସାଧିବ ଧରମ
ଦେଇ ଏ ସମ୍ପଦରାଶି,

---

* ଦୁର୍ଗାବତୀଙ୍କ ଏକମାତ୍ର ପୁତ୍ର ।

# ରାଣୀ ଦୁର୍ଗାବତୀ

ସନ୍ତୁଷ୍ଟ ନୟନେ　　　　　ଗୃହୁଁ ଥିବ ପ୍ରିୟେ
ହୋଇ ମୁଁ ଅମରବାସୀ ।
ପତିପୂଜା ସାଙ୍ଗ　　　　　ହେଲା ବୋଲି କେବେ
ଦୁଃଖ ନ କରିବ ମନ,
ପଠାଇବ ପୂଜା　　　　　ଊର୍ଦ୍ଧ୍ୱରେ ଥାଇ ଗୋ
କରିବି ତାହା ଗ୍ରହଣ ।
ଯାଉଛି ପ୍ରେୟସି !　　　　　ସେହି ଦେଶେ ଯହିଁ
ନାହିଁ ଜରା ମୃତ୍ୟୁ ଡର,
ଜନମି ମାନବ　　　　　ଅବଶେଷେ ଧରେ
ସେ ପଥ ଚିରସୁନ୍ଦର ।
ଏହି ଦେଖ ପ୍ରିୟେ !　　　　　ସୁବର୍ଣ୍ଣ ରଥେ ଗୋ
ଅମର ଯୁବତୀଗଣ,
ଫୁଲ ମାଳା କରେ　　　　　ଡାକିଲେଣି ମୋତେ
ଶୁଭିଲଣି ଶଙ୍ଖ ସ୍ୱନ ।
ବିଦାୟ ନେଉଛି　　　　　ଚିର ଦିନ ପାଇଁ
'ପ୍ରିୟତମେ ! ନାରାୟଣ,"
ବୋଇଲେ, ନରେଶ　　　　　ନିଷ୍ପ୍ରଭ ନୟନୁ
ଅବେଗେ ବହିଲା ବନ ।
ଏତକ କହିଣ　　　　　ରାଜାଙ୍କ କଣ୍ଠ ଲୋ
କ୍ଷୀଣୁ ହେଲା କ୍ଷୀଣତର,

## ପଞ୍ଚମ ତରଙ୍ଗ

ମୁଖେ ମୃତ୍ୟୁଛାୟା ଘୋଟିଲା ଯଥା ଲୋ
ରାହୁଗ୍ରାସେ ଦିବାକର ।
ଦେଖିଲେ ମହର୍ଷୀ ପ୍ରାଣବିହଙ୍ଗମ
ନଶ୍ୱର ପଞ୍ଜର ଖୋଲି
କରି ଏବେ ଧୀରେ ମୁକ୍ତ ଗଗନେ ଲୋ
ନୀରବେ ଯାଇଛି ଚାଲି ।
ନୈଶ ନିସ୍ତବ୍‌ଧତା ଭଙ୍ଗ କରି ଦେବୀ
କାନ୍ଦିଲେ ଅତି ବ୍ୟାକୁଳେ,
ଭୂପତି ଚରଣ ଧରି ହତାଙ୍କାନେ
ଢଳି ପଡ଼ିଲେ ସେ ତଳେ ।

---

# ଷଷ୍ଠ ତରଙ୍ଗ



ବୁଡ଼ିଲେଣି ଭାନୁ ପଶ୍ଚିମ ଗଗନେ
ଅନ୍ଧାର କରି ଜଗତ,
ଝାଉଁଳି ଗଲାଣି ସରେ କମଳିନୀ
ବିରହେ ହୋଇ ଆରତ ।
କାନ୍ଦୁ ରେ ନନ୍ଦନ ! ଯାଉଛନ୍ତି ପତି
କେବଳ ରାତିକ ପାଇଁ,
ପାହିଲେ ଏ' ନିଶା ପ୍ରାଚୀ ଗଗନେ
ଉଇଁବେ ପ୍ରାଣସାଇଁ ।

# ଷଷ୍ଠ ତରଙ୍ଗ

ହସିବୁ ପୁଲକେ ପୁଣି ସୁନ୍ଦର ଲୋ ।
ପାଇ ରବି ଦରଶନ,
କିନ୍ତୁ ଦୁର୍ଗାବତୀ — ନେଣ୍ଟୁ ଶରଦାନ
ଝରିବ ଉପବ-ବନ ।
କାଲି ଯେ ଲଳନା ହୋଇଥିଲେ ଅହା
ରାଜ-ଅଙ୍କ-ସୁଶୋଭନା,
ସେହୁ ରାଣୀ ଦୁର୍ଗା — ବତୀ ଏବେ ହେଲେ
ବିଧବାବ୍ରତଗ୍ରହଣୀ ।
ଓଳଏ ମାତର ହବିଷାନ୍ନ ରାଣୀ
କରନ୍ତି ସୁଖେ ଭୋଜନ,
ଗୈରିକ ବସନ ପରିଧାନ ପୁଣି
କୁଶ ଆସନେ ଶୟନ ।
ତଥାପି ସୁନ୍ଦରୀ ଅଙ୍ଗୁ ଅଦ୍ଭୁତ
ତେଜ ହୋଇ ବିକଶିତ,
କି ଏକ ପ୍ରତିଭା ସ୍ୱର୍ଗୀୟ ଜ୍ୟୋତରେ
ଧରା କରେ ଅଲୋକିତ ।
ନିମୀଳିତନେତ୍ରା ଯୋଗିନୀ ମୂରତି
ଦେଖି ଜାଗି ଉଠେ ମନେ,
ବୈରାଗ୍ୟ ସହିତ ମୁକତି କି ଅବା
ବିରାଜେ ରାଜଭବନେ ।

# ରାଣୀ ଦୁର୍ଗାବତୀ

ଅତି ପ୍ରତ୍ୟୁଷରୁ ସ୍ନାନ ସାରି ଦେବୀ
ଫେରନ୍ତି ନିଜ ସଦନେ,
ପୂଜନ୍ତି ଭରତା ସୁବର୍ଣ୍ଣ ପାଦୁକା
ସ୍ଥାପି ସ୍ୱର୍ଣ୍ଣ ସିଂହାସନେ ।
ଫୁଲ ଚନ୍ଦନରେ ପାଦୁକାଯୁଗଳ
ମୁଦେ କରନ୍ତି ମଣ୍ଡନ,
ଭକ୍ତିଗଦଗଦେ ନମନ୍ତି ଭୂତଳେ
ଗଳାରେ ଦେଇ ବସନ ।
କର ଯୋଡ଼ି ପୁଣି ପ୍ରଶାନ୍ତ ବଦନେ
ବସି ସିଂହାସନ ତଳେ,
ମନେ ମନେ କିସ ଗୁହାରି କରନ୍ତି
ନୟନ ପୂରାଇ ଜଳେ ।
ପ୍ରତ୍ୟହ ଅତିଥି ଅଭ୍ୟାଗତ ଡାକି
ସେବନ୍ତି ରାଣୀ ଆଦରେ,
ଦରିଦ୍ର ଖୋଜିବା ପାଇଁ ଗ୍ରାମ ଅନ୍ତେ
ଭ୍ରମୁଥାନ୍ତି ଅନୁଚରେ ।
ମହର୍ଷିସୁଲଭ ଭୋଗ ବିଳାସକୁ
ଦଳି ରାଣୀ ପଦତଳେ,
କଠୋର ସାଧନେ ଜଳାଇଲେ ତନୁ
ବିଧବା ତପ-ଅନଳେ ।

## ଷଷ୍ଠ ତରଙ୍ଗ

ଗଡ଼ ରାଜ୍ୟ ଅଧି—  ଶ୍ୱରୀ ଯେଉଁ ନାରୀ
ଯା' ମୁଖନିସୃତ ବାଣୀ,
ଶୁଣିବାକୁ ଶତ  ଶତ ଦାସ ଦାସୀ
ଉଭା ଯୋଡ଼ି ବେନି ପାଣି ।
ବରୁଣ ସମ୍ପଦ  ତୁଚ୍ଛ କରି ଯାର
ବିପୁଳେ ଧନଭଣ୍ଡାର,
ସେହି ନାରୀ ଆଜି  ଯୌବନେ ଯୋଗିନୀ
ଧନ୍ୟ ସେ ବିଧି ବିଚାର ।
ବିଧବା ଜୀବନେ  ଏ' କଠୋର ଧର୍ମ
ତୁଷ-ଅନଳେ ଦହନ,
ତଥାପି ଅମ୍ଳାନ—  ବଦନେ ସୁନ୍ଦରୀ
ସହନ୍ତି ଏହି କଷଣ ।
ସହମରଣରେ  ପୋଡ଼ିଥାନ୍ତେ ସିନା
ଥରେ ସ୍ୱାମୀ ଚିତାନଳେ,
କିନ୍ତୁ ସେ ଦାରୁଣ  ସ୍ମୃତି ନେଇ ରାଣୀ
ପୋଡ଼ୁଛନ୍ତି ଅନ୍ତରଳେ ।
କହୁଛନ୍ତି ପତି  'ମନେ ରଖ ପ୍ରିୟେ !
ଯେ' ସହେ ସେ ଏକା ଧନ୍ୟ,
ସହିଷ୍ଣୁତା ଗୁଣେ  ସତୀ ସମାଜେ ଗୋ
କୀର୍ତ୍ତିଯୁତ ହୋଇବ ଗଣ୍ୟ ।'

# ରାଣୀ ଦୁର୍ଗାବତୀ

ବେଦବାକ୍ୟ ପରି ସେ ଆଦେଶ ଦେବା
ହୃଦୟେ ଅଙ୍କି ଆଦରେ,
ତପସ୍ୟା ଅନଳେ କାଞ୍ଚନ ତନୁ ଲୋ
ଦହୁଛନ୍ତି ଅକାତରେ ।
ଏକ ପକ୍ଷେ ପୁଣି ବୈଧବ୍ୟ ଧରମ
ଅନ୍ୟ ପକ୍ଷେ ରାଜ୍ୟକଥା,
ସମ୍ମୁଖେ ରହୁଛି କଠୋର କର୍ତ୍ତବ୍ୟ
ଟେକିବାକୁ ହେବ ମଥା ।
ପ୍ରାଣର ସଙ୍ଗାଳ ବୀର ନାରାୟଣ
କୋମଳ ବୟସ ତା'ର,
ତା' ପାଇଁ ନିଶ୍ଚୟ ବୋହିବାକୁ ହେବ
ରାଇଜ ଶାସନ ଭାର ।
ଏତେ ପୂଜାର୍ଚ୍ଚନା ଧରମ ଚିନ୍ତାରେ
ଥାଇ ରାଣୀ ଦୁର୍ଗାବତୀ,
କର୍ତ୍ତବ୍ୟ ପ୍ରେରଣେ ରାଇଜ ଶାସନେ
ବଳାଇଲେ ନିଜ ମତି ।
ପରଜାଗଣଙ୍କ ହିତ କାମନାରେ
ବସିଲେ ସେ ସିଂହାସନେ,
ରାଜ୍ୟର ମଙ୍ଗଳେ ନିୟୋଜିଲେ ପୁଣି
ବିଚକ୍ଷଣ ମନ୍ତ୍ରୀଗଣେ ।

# ଷଷ୍ଠ ତରଙ୍ଗ

ପ୍ରତ୍ୟହ ନିଜର ଧରମ ଧିଆନ
କରି ରାଣୀ ସମାପନ,
ଯଥାକାଳେ ପୁଣି କରୁଥିଲେ ଆସି
ସିଂହାସନ ଆରୋହଣ ।
ନିତାନ୍ତ ଜଟିଳ ସୂକ୍ଷ୍ମ ବୈଷୟିକ
ରାଜକାର୍ଯ୍ୟ ନିରଳସେ,
ଅଳପ ସମୟେ ସୁଚାରୁ ରୂପେ ଲେ
ସମାଧୁଥିଲେ ହରଷେ ।
ରାଜକାର୍ଯ୍ୟେ ରାଣୀ ଅପୂର୍ବ ପ୍ରତିଭା
ତୀକ୍ଷ୍ଣ ବୁଦ୍ଧି ପରିଚୟ
ପାଇ ନୀତିଶ୍ରେଷ୍ଠ ମନ୍ତ୍ରୀଏ ସୁଦ୍ଧା ଲେ
ଲଭିଲେ ମନେ ବିସ୍ମୟ ।
କୋମଳପ୍ରକୃତି ଅନ୍ତଃପୁରାଙ୍ଗନା
ଧରମମୟ ଜୀବନ,
ହିନ୍ଦୁ ବିଧବାର ପକ୍ଷେ ଏ' ବିଷୟ
ଧରାଧାମେ ଅତୁଳନ ।
ଅପରାଧୀ ପକ୍ଷେ ଦିଶିଲେ ଲଳନା
ପ୍ରଚଣ୍ଡ ମାର୍ତ୍ତଣ୍ଡ ପରି,
ନିର୍ଦ୍ଦୋଷ ନୟନେ ମୁଖ-ଚନ୍ଦ୍ରମାରୁ
ସୁଧା ପଡ଼ୁଥିଲା ଝରି ।

# ରାଣୀ ଦୁର୍ଗାବତୀ

ଏକାଧାରେ କୋମ—   ଳତା କଠୋରତା
ରାଣୀ ପବନ ଅନ୍ତରେ,
ବିରାଜୁ ଥିଲେ ଯେ   ବିରୋଧ ପ୍ରଣୟ
ଭୁଲି ଯାଇ ପରସ୍ପରେ ।
ପ୍ରିୟ ପରାଣରୁ   ଅଧିକ ଥିଲେ ଯେ
ତାଙ୍କ ପରଜାମଣ୍ଡଳୀ,
ପାଳୁଥିଲେ ସତୀ   ଅତ୍ୟନ୍ତ ସରାଗେ
ପୁଅ ସ୍ନେହଠାରୁ ବଳି ।
ଗୃହଅଡ଼େ ଭ୍ରମି   ଦୀନ ପ୍ରଜାଙ୍କର
ଦାରୁଣ ଯାତନା ଜାଣି,
ଭୋକୀକୁ ଆହାର   ଯୋଗାଇ ଶୋକୀକୁ
ଭାଷିଲେ ଆଶ୍ୱାସବାଣୀ ।
କ୍ରମେ ରାଣୀଙ୍କର   ନ୍ୟାୟ ବାଜଣା ଯେ
ବାଜ ଭାରତବରଷେ,
କୀର୍ତ୍ତି-ବୈଜୟନ୍ତୀ   ଗଗନେ ଉଡ଼ିଲା
ଦୋହଲି ବାତେ ହରଷେ ।
ଅନ୍ୟାନ୍ୟ ରାଇଜ   ପଳାଶଫୁଲ ଯେ
ଏ' ଥିଲା ସଜ-ଗୋଲାପ,
ଅନ୍ୟ ରାଜ୍ୟ ଥିଲେ   ପିମ୍ପୁଡ଼ି, ଏ' ଥିଲା
ମଣିଧରା କାଳ ସର୍ପ ।

# ଷଷ୍ଠ ତରଙ୍ଗ

କୁଟିଳପ୍ରକୃତି ସୁରଭି ଗୋଲାପେ
ଧାଏଁ ଛୁଣ୍ଡାଇବା ପାଇଁ,
ସେ ସୁମନ ତଳେ ତୀକ୍ଷ୍ଣ କଣ୍ଟକ ଲୋ
ଜାଣି ତ ପାରଇ ନାହିଁ ।
ଧାଇଁ ଥାଏ ସିନା ମଣି ଅହରଣେ
ବହୁ ଆଶା ହୃଦେ ଧରି,
କିନ୍ତୁ ନ ଜାଣଇ ମଣି ପଶ୍ଚାତେ ଲୋ
ଗରଳ ରହିଛି ଭରି ।
ସେହିପରି ଆଶା ପୋଷି ରାଣୀଙ୍କର
ସାମ୍ରାଜ୍ୟ ଗ୍ରାସିବା ପାଇଁ,
ଯବନ କଳଙ୍କ ବାଜ ବାହାଦୁର
ଆସିଥିଲା ଦନେ ଧାଇଁ ।
ଯବନ ସେନାଗ୍ନି ଆଗମନେ ରାଣୀ
ଜାଳିଲେ ସମରାନଳ,
ସେ ଅନଳ ତେଜେ ହରାଇଲା ଶତ୍ରୁ
ଅପଣାର ଦମ୍ଭ ବଳ ।
ବାର ବାର ହୋଇ ବାଜ ବାହାଦୁର
ପରାଜିତ ହେଲା ରଣେ,
ଦୁର୍ଗାବତୀଙ୍କର ବିଜୟ କେତନ
ଉଡ଼ିଲା ନୀଳ ଗଗନେ ।

ତାଙ୍କ ଯୁଦ୍ଧନୀତି ଧୀର ସାହସ ଲୋ
ଦିଗ କଲା ଅଲୋକିତ,
ସେ ଦିବ୍ୟ ଅଲୋକ ଦେଖି ରାଜଗଣ
ବିସ୍ମୟେ ହେଲେ ଚକିତ ।
ଦିନେ କୁରମତି ଯବନଦୂତ ଲୋ
ମିଳିଲା ଗଡ଼ମଣ୍ଡଳେ,
ଅତି ସସମ୍ଭ୍ରମେ ନମିଲା ରାଣୀଙ୍କ
ଅଭୟ ଚରଣ ତଳେ ।
ସମାଦରେ ରାଣୀ ଅସଫ ଖାଁଙ୍କୁ
ଅତିଥିରୂପେ ଗ୍ରହଣ
କରି ପ୍ରିୟ ବାକ୍ୟେ ବସିବାକୁ ଦେଲେ
ସଭା ମଧ୍ୟେ ଯୋଗ୍ୟାସନ ।
ମୃଦୁ କଣ୍ଠେ ପରେ ପୁଚ୍ଛିଲେ ଲଳିତେ
"ପ୍ରକାଶ ଦୂତଶେଖର,
କେଉଁ ଗୁରୁ କାର୍ଯ୍ୟେ ଏ' ଗରିବ ଦେଶେ
ଆଗମନ ବୀର ! ପ୍ରବର ।"
ନତ କରି ମଥା ବିନୟ କଣ୍ଠେ ଲୋ
ବୋଇଲା ଦୂତ ଯବନ,
"ତବ ନ୍ୟାୟ ନୀତି ବିଜୟ ବ୍ୟାପିଛି
ଭାରତ ସାରା ଗଗନ ।

# ଷଷ୍ଠ ତରଙ୍ଗ

ସେ ବିଜୟପୁରେଶ ଶୁଣି ଅକବର
ଦେଲେ ଗୋ ମୋତେ ପଠାଇ,
ନ୍ୟାୟ୍ୟ ଧର୍ମ ଜ୍ଞାନ ପ୍ରକାଶୀ ସମୀପେ
ରାଜନୀତି ଶିକ୍ଷା ପାଇଁ ।
ଆସିଅଛୁ, ଦେବୀ ଦୟା ବହୁ ଦାସେ
ଚରଣେ ଦେଲେ ଆଶ୍ରୟ,
ତବ ସୁକଲ୍ୟାଣେ ରାଜନୀତି ଶିକ୍ଷି
ତୃପ୍ତ ହୁଅନ୍ତା ହୃଦୟ ।"
ଏହିପରି ନାନା ଚାଟୁ ଭାଷା ଭଣି
ମୋହିଲା ମହିଷୀ ମନ,
କରୁଣାରୂପିଣୀ କଲେ ତାହାଠାରେ
ବନ୍ଧୁଭାବ ସଂସ୍ଥାପନ ।
କପଟ ବିନୟ ମୂରତି ନ ଚିହ୍ନି
ସୁନ୍ଦରୀ ସରଳ ମନେ.
ବିଶ୍ୱାସ ରଖିଲେ ବର ସେ ଯବନେ
ଅମାତ୍ୟ ମଧ୍ୟରେ ଜଣେ ।
କପଟୀ ସିନା ଲେ କପଟୀ ଚିହ୍ନଇ
ସରଳା ଚିହ୍ନିବେ କାହିଁ,
ଏଣୁ କପଟର ପ୍ରତିମୂର୍ତ୍ତି ରାଣୀ
ଚିହ୍ନି ତ ପାରିଲେ ନାହିଁ ।

ନିଃଶଙ୍କେ ଭ୍ରମିଲ ଯବନ ରାଇକେ
ପାଇ ରାଣୀଙ୍କ ଆଶ୍ୱାସ,
ଧନୁ ଧନୁ ତାହା— ଠାରେ ରାଣୀଙ୍କର
ଜନ୍ମିଲା ଦୃଢ଼ ବିଶ୍ୱାସ ।
ରାଣୀଙ୍କ ବିଶ୍ୱାସ ଜନ୍ମନ୍ତେ ଯବନ
ଗଡ଼ରାଜ୍ୟ ଅଧିକାର,
କରିବା ପାଇଁ ଲୋ ନାନା କୁଟବୁଦ୍ଧି
ହୃଦୟେ କଲା ବିଚାର ।
ଗଡ଼ମଣ୍ଡଳର ସୀମାନ୍ତବର୍ତ୍ତୀ
ଗ୍ରାମମାନଙ୍କେ ଯବନ,
ବଳାତ୍କାରେ ପଶି କଲା ପରଜାଙ୍କ
ଧନ ସମ୍ପତ୍ତି ଲୁଣ୍ଠନ ।
ଏ ସମ୍ବାଦ ଯହୁଁ ଚଉରଗଡ଼େ ଲୋ *
ପଡ଼ିଲା ରାଣୀ ଶ୍ରବଣେ,
କମ୍ପ କଲେବରେ କ୍ରୋଧାଗ୍ନି ସ୍ଫୁଲିଙ୍ଗ
ଛୁଟିଲା ବାମା ନୟନେ ।

---

* ରାଣୀ ଦୁର୍ଗାବତୀ ପରେ ଚୌରଗଡ଼କୁ ନିଜ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ ।

# ଷଷ୍ଠ ତରଙ୍ଗ

ସେହିକ୍ଷଣି ଦେବୀ ଆଦେଶିଲେ ଖରେ
ସେନାନାୟକେ ଡକାଇ,
ଯାଅ ଯାଅ ବୀର ! ସୀମାନ୍ତ ପ୍ରଦେଶ
ରକ୍ଷା କର ପ୍ରାଣ ଦେଇ ।
ପ୍ରବେଶିବ ଯେବେ ଯବନ କୁକ୍କୁର
ମୋର ରାଇଜରେ ପୁଣି,
ବନ୍ଦୀ କରି ଘେନ ଆସିବ ଜଳାଇ
ପ୍ରଚଣ୍ଡ ସଂଗ୍ରାମ ଧୂନି ।
ଜନନୀ ଆଦେଶ ମସ୍ତକେ ଭୂଷଣ
କରି ବୀର ସେନାପତି,
ସେନା ଦଳ ସଙ୍ଗେ ଘୋଟକ ଉପରେ
ସେହୁ ବେଗେ କଲେ ଗତି ।
କିଛି ଦୂର ପଥେ ସୀମାନ୍ତ ପ୍ରଦେଶେ
ଘେନି ପରଜାଙ୍କ ଧନ,
ଅନୁଚର ସହ ମାଳବ ମୁଖରେ
ପଳାଉଥିଲା ଯବନ ।
ଗୋଡ଼ାଇଲେ ପଛେ ଗଡ଼ ସେନାପତି
ସେନା ଦଳ ସଙ୍ଗେ ଧରି,
କୁରଙ୍ଗ ପଶ୍ଚାତେ ଧାଇଁ ଥାଏ ଯଥା
ଦୁର୍ଦାନ୍ତବନ କେଶରୀ ।

# ରାଣୀ ଦୁର୍ଗାବତୀ

ଘୋଡ଼ାଇ ଘୋଡ଼ାଇ ସମ୍ମୁଖ ସମରେ
ଭେଟିଲେ ଯବନ ଚରେ,
ଅନାୟାସେ ବନ୍ଦୀ କରି ନେଇ ଗଲେ
ଦୁର୍ଗାବତୀ ନିକଟରେ ।
ଅସଙ୍କୋଚ ମୁଖେ ଦେଖାଇ ରାଣୀ ଲୋ
ରକ୍ତ-ପଲାଶ-ନୟନ,
ଜଳଦ ଗମ୍ଭୀର କଣ୍ଠେ ଭାଷିଲେ ସେ
"ଶୁଣ ରେ ମୂର୍ଖ ଯବନ ।
ରାଜ ଅଭରଣେ ମଣ୍ଡାଇ କୁକ୍କୁରେ
ଦେଲେ ରାଜ୍ୟ ଅଧିକାର,
ଅଇଁଠା ପତର ଲେହନ ସ୍ୱଭାବ
ଛାଡ଼ି ପାରଇ କି ତା'ର ?
ବୁଝିଲୁ ରେ ଦୁଷ୍ଟ ! ମୋର ରାଇଜରେ
ରାଜନୀତି ଶିକ୍ଷା ପାଇଁ,
ଦସ୍ୟୁ ସରଦାର ଆକବର ତୋତେ
ପଠାଇ ଥିଲା କିପାଇଁ !"
ଥରି ଥରି ଚର ବୋଇଲା ବିନୟେ
"ହେଉ ରାଣୀ ! ଅବଧାନ,
ପ୍ରେରିଲେ ସମ୍ରାଟ କରିବାକୁ ତବ
ରାଜ୍ୟେ ସୁନୀତି ବିଧାନ ।

## ଷଷ୍ଠ ତରଙ୍ଗ

କହୁଥିଲେ ପୁଣି କହୁବୁ ରାଣୀଙ୍କ
କୋମଳମତ ସେ ନାରୀ,
ନୁହଇ ସୁନ୍ଦର କୋମଳେ କର୍କଶ
ଦେଖିବେ ଥରେ ବିଗୁଡ଼ି ।
ମିନ୍ଦ ରାଜ୍ୟରୂପେ ବାଦସାହ ଚଳେ
ରହୁବ ଗଡ଼ମଣ୍ଡଳ,
ଧର୍ମପଦେ ନୃପପଦେ ସାହା ହେବେ ଅସି
ସଙ୍ଗେ ଧରି ଦଳବଳ ।
ପ୍ରଜାର ମଙ୍ଗଳେ ରାଜ୍ୟର ମଙ୍ଗଳ
କହୁବୁ ସବୁ ବୁଝାଇ,
ନ ମାନିଲେ ରାଣୀ ଭାଗ୍ୟଲକ୍ଷ୍ମୀ ତାଙ୍କ
ଅଣିବୁ ବଳେ ଛଡ଼ାଇ ।
ମୋହର କି ଦୋଷ ବିଗୁଡ଼ିଲୁ ଥରେ
ଦୂତ ମୁଁ ଅଟେଁ ମାତର,
ଯାହା କହୁଥିଲେ କହୁଲି ରାଣି ଗୋ !
ବିଧାନ ଯାହା ତା କର ।”
ଏ କଥା ଶ୍ରବଣେ କ୍ରୋଧେ ରାଣୀଙ୍କର
ଆରକ୍ତ ହେଲା ନୟନ,
ଦେଖୁଁ ଦେଖୁଁ ପୁଣି ସେ ଛଟା ଲିମିଷେ
ଅଙ୍ଗ କଲା ସମାଚ୍ଛନ୍ନ ।

# ରାଣୀ ଦୁର୍ଗାବତୀ

ରାଗେ ଜରଜର                    ହୋଇ ଦେବୀ ଛନ୍ତି
ବୋଇଲେ "ଦୁଷ୍ଟ ପାମର !
ନୀଚ ମୁଖେ କେତେ                    ବାରତା ତୁ କହୁ
ନାହିଁ କି ମରଣେ ଡର ।
ବାଦସାହ ଛଳେ                    ରହିବ ମୋ ରାଜ୍ୟ
ଏତିକି ଗରିମା ମନେ,
ନ ହେଲେ ମୋହର                    ଭାଗ୍ୟଲକ୍ଷ୍ମୀ କାଢ଼ି
ରଖିବେ ନିଜ ସଦନେ ।
ଏତିକି ଅସ୍ପର୍ଦ୍ଧା                    ବୁଝି ନାହିଁ ସେହି
ରାଜପୁତ ଜାତି କଥା,
ଭାବନ୍ତି ଏ' ଭୟେ                    ରାଜପୁତବାଳା
ଢାଳିବ ସ୍ତ୍ରୀ ପଦେ ମଥା ।
ଏତେ ସୁନୀତି ସେ                    ଜାଣିଲ ବର୍ବର
ପର ରାଜ୍ୟ ଆକ୍ରମଣେ,
କି ଅନୀତି ଅବା                    ଦେଖିଅଛୁ ସେହି
ମୋର ଏ' ରାଜ୍ୟ ଶାସନେ ।
ବର୍ବର ପ୍ରଭୁର                    ବର୍ବର ଦୂତ ତୁ
ଆସିଥିଲୁ କଉଶଲେ,
ଦସ୍ୟୁବୃତ୍ତି ପାଇଁ                    ପଠାଇଥିଲା ରେ
ରାଜନୀତି ଶିଖାଛଲେ ।

## ଷଷ୍ଠ ତରଙ୍ଗ

ସେ ଦସ୍ୟୁ ପାମର ଦୂତ ହୋଇ ଆସି
କହୁଛୁ ବାଣୀ ଭରସି,
ନୋହିଲେ ଯବନ ରକ୍ତେ ଅପବିତ୍ର
ହୋଇଥାନ୍ତା ଏ' ମୋ ଅସି ।
ଫମିଲ ବର୍ବର ! କହ ଯାଇ ଏବେ
ବର୍ବର ପ୍ରଭୁଙ୍କୁ ତୋର,
ଅଜ୍ଞାଯାଏ ବୀର — ପୃଥ୍ୱୀ ଶୂନ୍ୟା ନୁହେ
ଭାରତଜନନୀ ମୋର ।
ଶରୀରେ ବିନ୍ଦୁଏ ରକ୍ତ ଥିବାଯାଏ
ନୋହିବ ଭାରତ ହୀନା,
କରେ ଖଡ୍ଗ ଥିବା ଯାଏ ଦୁର୍ଗାବତୀ
ନୋହିବ କେବେ ଅଧୀନା ।
ଦୂର ହୁଅ ଏବେ ସମ୍ମୁଖୁ ମୋହର
ଯବନକୁଳକଳଙ୍କ,
ନୋହିଲେ ଶାଣିତ କରବାଳେ ତୋର
କାଟିବି ହୀନ ମସ୍ତକ ।"
ଏହା କହି ଦେବୀ ଆଦେଶିଲେ ଦୂତେ
ବନ୍ଧନ ମୋଚନ ପାଇଁ,
ଶୃଗାଳ ପରି ଲେ ଦିଲ୍ଲୀ ଅଭିମୁଖେ
ଯବନ ଗଲା ପଳାଇ ।

## ସପ୍ତମ ତରଙ୍ଗ



ବହି ଆସିଲଣି ଧୀରେ ଧୀରେ ଏବେ
ପ୍ରଭାତ-ସ୍ନିଗ୍ଧ-ପବନ,
ଭାସି ଆସିଲଣି ବାୟୁ ସ୍ତରେ ସ୍ତରେ
ଭରତଅ 'କୁହୁ' ସ୍ୱନ ।
ଡୁବି ନାହିଁ କିନ୍ତୁ ପଶ୍ଚିମ ଗଗନେ
କୁମୁଦିନୀ-ମନ-ଚୋର,
ମାଡ଼ି ବସିଲଣି ଚିତ୍ତ ମଧ୍ୟେ ଏକା
ବିରହ-ଭାବନା-ଘୋର ।

## ସପ୍ତମ ତରଙ୍ଗ

ନିଭି ତ ନାହିଁ ଲୋ   ଗୌରବଗର୍ବ ରାଜ—
ପଥେ ପଥେ ଦୀପାବଳି,
ତେଜହୀନ କିନ୍ତୁ   ଭବିଷ୍ୟର ବେଣ୍ଡି
ବିପଦ ହୃଦୟେ କଳି !
ରାଜଭବନର   କେଶରୀ ଦୁଆରେ
ଉନ୍ମୁକ୍ତ କୃପାଣ କଟିରେ,
ଜଗି ସଇନିକ   ନିଦ୍ରା ଘୋରେ କିନ୍ତୁ
ଝୁଙ୍କି ପଡ଼େ ଥରେ ଥରେ ।
ସହସା ପଶ୍ଚିମ   ଶଇଳ ଶିଖରୁ
ଶୁଭିଲା ତୋପ ଗର୍ଜନ,
ଘଡ଼ଘଡ଼ ନାଦେ   ଧ୍ୱନିତ କରି ଲୋ
ପ୍ରସୁପ୍ତ ଶାନ୍ତ ଗଗନ ।
ଚମକି ପ୍ରହରୀ   କରୁ କୃପାଣ ଲୋ
ସଶବ୍ଦେ ପଡ଼ିଲା ଖସି,
ଅନାଇ ଦେଖିଲା   ସମ୍ମୁଖେ କିଏ ସେ
ଧାଉଁଛି ଘୋଟକେ ବସି ।
କ୍ଷିପ୍ରହସ୍ତେ ଅସି   ସାଉଁଟି ସଗର୍ବେ
ଅଗକୁ ଗୁଳି ପଥୁର,
ବଜ୍ରକଣ୍ଠେ ପୁଣି   ଆଦେଶିଲା "କିଏ
ନୁହ ଆଉ ଅଗ୍ରସର ।"

ପ୍ରହରୀ ଆଦେଶେ ଉଭା ହୋଇ ଦୂରେ
ଛନଛନେ ନବାଗତ,
ବୋଇଲା, "ବାରତା ବାହକ ଆସିଛି
ଗୁରୁ ସମ୍ବାଦ ସଙ୍ଗତ ।
ପ୍ରହରୀ ଇଙ୍ଗିତେ ରାଣୀ ପାଖେ ଯାଇ
ବୋଇଲା କଣ୍ଠିତ ସ୍ୱରେ,
"ବିଷମ ବିପଦ, ଆସୁଛି ଯବନ
ଅସଂଖ୍ୟ ସୈନ୍ୟ ସଙ୍ଗରେ ।"
ଏ ସମ୍ବାଦ ଶୁଣି ନିସ୍ତବ୍ଧ ମହିଷୀ
ରହିଲେ କ୍ଷଣକ ପାଇଁ,
କିସ ଭାବି ପୁଣି ଅତି ତରତରେ
ତଳେ ଆସିଲେ ଓହ୍ଲାଇ ।
କିଛିକ୍ଷଣ ପରେ ସେନାପତି ସଙ୍ଗେ
ପହଞ୍ଚିଲେ ମନ୍ତ୍ରୀଗଣ,
ଦେଖିଲେ ପ୍ରକୋଷ୍ଠେ ବସିଛନ୍ତି ରାଣୀ
ଢଳଢଳ ଯୋତି ବଦନ ।
ତହୁଁ ଧୀରେ ଧୀରେ ପ୍ରଧାନ ମନ୍ତ୍ରୀ କ୍ଷେ
ବୋଇଲେ ବିଷାଦ ବାଣୀ,
"ଅତର୍କିତେ ଏବେ ପହଞ୍ଚିଲା ମ୍ଲେଚ୍ଛ
କି କରିବା ରାଜରାଣୀ !

## ସପ୍ତମ ତରଙ୍ଗ

ଅମ୍ବର ସଇନ      ଇତସ୍ତତ ସର୍ବେ
ଦୂରରେ ଅଛନ୍ତି ଯାଇ,
ପଲ୍ଲୀମଧ୍ୟେ ଭ୍ରମି      ସଇନ ସଂଗ୍ରହେ
ଅବସର ଆଉ ନାହିଁ ।”
ସେନାପତି ମୁଖେ      ଅନାଇ ମହିଷୀ
ଭାଷିଲେ ଧୀରେ ବଚନ,
“ଏହି ଦୁର୍ଗ ମଧ୍ୟେ      ସୁଶିକ୍ଷିତ କେତେ
ଅଛନ୍ତି ସୈନିକଗଣ ।”
ସସମ୍ଭ୍ରମେ ସେନା–      ନାୟକ ବୋଇଲେ
ଯୋଡ଼ି ଶିରେ ବେନି କର,
“ସୁଶିକ୍ଷିତ ମଧ୍ୟେ      ହେବେ ସଇନିକ
ପଞ୍ଚ ସହସ୍ର ମାତର ।”
ପୁଣି ଅଧୋମୁଖେ      ବସି ରାଜରାଣୀ
ଚିନ୍ତା କଲେ କିଛି କ୍ଷଣ,
ବୋଇଲେ ସଦମ୍ଭେ      “ଚିନ୍ତା ନାହିଁ ଏବେ
ସୈନ୍ୟ ସଜାଅ ବହନ ।”
ଜନନୀ ଆଦେଶ      ଶିରେ ବହି ବୀର
ଚଳିଲେ ନଗର ମୁଖେ,
‘ସାଜ ସାଜ’ ରବେ      ବଜାଇଲେ ଭେରୀ
ଭୈରବ ମନ ଉତ୍ସୁକେ ।

## ରାଣୀ ଦୁର୍ଗାବତୀ

ଏହି ଅବସରେ ତରବରେ ରାଣୀ
ସ୍ନାନ ସାରିଲେ ବହନ,
ପୂଜାଇଲା ବିଧି ବଢ଼ାଇ ଭରତା—
ପାଦୁକା କଲେ ବନ୍ଦନ ।
ତହୁଁ ଅସ୍ତ୍ରାଗାରେ ପଶି ଶୁଦ୍ଧ ବେଶ
ହେଲେ ଜଗତମୋହିନୀ,
ଝଲସି ଉଠିଲ ଅଙ୍ଗେ ନବ ଆଭା
ଯଥା ସ୍ଥିର ସୌଦାମିନୀ ।
ରକ୍ତ ଜବା ଜିଣି ଗୈରିକ ବସନେ
ଆବୋରିଲେ ନିଜ ତନୁ,
ପୃଷ୍ଠଦେଶେ ବାନ୍ଧି ଶରପୂର୍ଣ୍ଣ ତୁଣୀ
ସ୍କନ୍ଧରେ ଧରିଲେ ଧନୁ ।
କଟିରେ ଭିଡ଼ିଲେ ବଜ୍ର କବଚ ଲୋ
ବାନ୍ଧିଲେ ଆୟୁସ ଢାଲ,
ବାମ କରେ ଶୋଭେ ଶାଣିତ ବଲ୍ଲମ
ବାମେତରେ କରବାଳ ।
ଦିନେ ଯେଉଁ କରେ ଶୋଭା ପାଉଥିଲା
ବୀଣା ମଧୁ ପୂରି ତାନ,
ସେହି କରେ ଆଜ ଝଲସି ଉଠିଲା
ଭୀମ ଉଲ୍ଲଙ୍ଗ କୃପାଣ ।

# ସପ୍ତମ ତରଙ୍ଗ

ଯେଉଁ ବକ୍ଷ ଦିନେ    ଗୁରୁ ଲଭୁଥିଲ
ବୋଧି କୁସୁମର ହାର,
ସେହି ବକ୍ଷ ଆଜି    ସହିବ ସମକ୍ଷେ
ଭୀଷଣ ବଜ୍ର ପ୍ରହାର ।
ଦେଖିଲେ ମହର୍ଷି    ଅସଂଖ୍ୟ ସେନାନୀ
ଭବନ ତୋରଣ ଦେଶେ,
ଉଭା ସୁଶାଣିତ    କରବାଲକରେ
ଭୈରବ ସଂଗ୍ରାମବେଶେ ।
ତୋରଣୀ ସମ୍ମୁଖେ    ଉଭା ହୋଇ ଋଷୀ
ବଜ୍ରଗମ୍ଭୀର ନିସ୍ୱନେ,
ବୋଇଲେ "ହେ ବୀରେ !    ଆସିଛି ଯବନ
ଆମ୍ଭ ରାଜ୍ୟ ଆକ୍ରମଣେ ।
ସ୍ୱଦେଶର ଚିର-    ସ୍ୱାଧୀନତା ପାଇଁ
ପଶିବାକୁ ହେବ ରଣେ,
ବିଜୟ ସୁମନେ    ପୂଜିବାକୁ ହେବ
ଭାରତମାତା ଚରଣେ ।
ଯବନ ସଂହାରି    ବିଜୟକେତନ
ଉଡ଼ାଇବ ରଣସ୍ଥଳେ,
ଅଥବା ବକ୍ଷରୁ    ଶୋଣିତ ଢାଳିବ
ଧରା-ରାଣୀ ପଦତଳେ ।

ସେଥିପାଇଁ ଆଜ                ତୁମ୍ଭଙ୍କୁ ସଭରେ
କରଅଛୁ ନିମନ୍ତ୍ରଣ,
ପ୍ରକାଶ ପ୍ରକାଶ                ଯାହାର ଯେ ଇଚ୍ଛା
ନିର୍ଭୟରେ ବନ୍ଧୁଗଣ !
ସ୍ୱାଧୀନତାଠାରୁ                ପରାଣ ମମତା
ମଣଇ ଯେ ମୂଲ୍ୟବାନ,
ଯବନଲାଞ୍ଛିତ                ଜନନୀ ଦର୍ଶନେ
ବ୍ୟଥିତ ନୁହେ ଯା' ପ୍ରାଣ;
କର ଯୋଡ଼ି ତାକୁ                ପ୍ରାର୍ଥନା ମୋହର
ଫେରୁ ସେ ଆପଣା ଘରେ,
ଯୁଦ୍ଧ ଶେଷ ଯାଏ                ନିଦ୍ରିତ ଥାଉ ସେ
କୋମଳ ବିଛଣା ପରେ ।"
ମହାରାଣୀ ମୁଖେ                ଏତକ ଶୁଣି ଲେ
ପୁଲକାଇ ଅଙ୍ଗଘନ,
ଖଡ୍ଗ ଟେକି ଶିରେ                ସମସ୍ୱରେ ବାଣୀ
ଭାଷିଲେ ସୈନିକଗଣ ।
"ଆଜଯାଏ ଦେବି !                ରାଜପୁତ ବଂଶେ
କେହି ତ ଜନମି ନାହିଁ,
ଅରାତିଲାଞ୍ଛିତ                ଜନନୀ ଦର୍ଶନେ
ଲୁଚିବେ ଭବନେ ଯାଇ ।

## ସପ୍ତମ ତରଙ୍ଗ

ଅଦ୍ୟାପି ବହୁଛି    ଏହି ଧମନୀରେ
ଉତ୍ତପ୍ତ ବୀରଶୋଣିତ,
ଅଦ୍ୟାପି ଝଲ୍‌କୁଛି    କଟିଦେଶେ ମାତଃ
କରବାଳ ସୁଶାଣିତ ।
ଏହି ପୂର୍ବେ ଥାଉଁ    ଯବନ କରିବ
ସିଂହାସନ ଆରୋହଣ,
ଏହି ପୂର୍ବେ ଥାଉଁ    ଜନନୀ ଅମ୍ଭର
ଲଭିବ ଭବେ କଷଣ !
ଉଇ ବା ପାରନ୍ତି    ପଶ୍ଚିମ ଗଗନେ
ତେଜୋମୟ ଦିବାକର,
ମରତ ଉଦ୍ୟାନେ    ଫୁଟି ବା ପାରନ୍ତି
ଆକାଶ-ତାରକାକର ।
ତଥାପି ବକ୍ଷେ ଗୋ    ବହୁଥିବା ଯାଏ
କ୍ଷୀଣ ଶୋଣିତର ଧାର,
ସ୍ୱାଧୀନତା କେହି    ନେଇ ନ ପାରିବ
ଯୁଝିଲେ ଜଗତ ସାରା ।
ଏହି ଯେ ହୃଦୟେ    ବହୁଅଛି ଦେବ !
ପବିତ୍ର ଶୋଣିତଧାର,
ଏହି ଶୋଣିତରେ    ସମ୍ପୂର୍ଣ୍ଣ ମାଆ ଗୋ
ଅଛି ତବ ଅଧିକାର ।

# ରାଣୀ ଦୁର୍ଗାବତୀ

ଆଦେଶନ୍ତୁ ଦେବୀ ବିଳମ୍ବ କାହିଁକି
ପ୍ରବେଶିବୁଁ ରଣାଙ୍ଗନେ,
[illegible] ଆନନ୍ଦେ ମରିବୁଁ
ମାତୃନାମ ଉଚ୍ଚାରଣେ ।”
ଦୁର୍ଗାବତୀ ତହୁଁ ସହାସେ ବୋଇଲେ
“ଏହି ତ ବୀରଙ୍କ କଥା,
ଉଠ ଉଠ ବୀରେ ! ସ୍ୱଦେଶ ଗରବେ
ଟେକି ତବ ବୀରମଥା ।
ଜଳଦ ଗମ୍ଭୀର କଣ୍ଠେ ଗାଅ ଥରେ
ସ୍ୱଦେଶ ବୀରସଙ୍ଗୀତ,
ରାଜପୁତନାର ପର୍ବତେ ପର୍ବତେ
ହେଉ ଥରେ ଝଙ୍କାରିତ ।
ହିମାଳୟ ଗାତ୍ରେ ପ୍ରତିହତ ହୋଇ
ଫେରୁ ସେ ସଙ୍ଗୀତ ସ୍ୱନ,
ଉତ୍ତାଳ ତରଙ୍ଗ ସହିତ ସାଗରେ
କରୁ ବେଗେ ସଞ୍ଚଳନ ।
ପବନହିଲ୍ଲୋଳେ ସ୍ତରେ ସ୍ତରେ ଉଠି
ଭୁବନେ ଯାଉ ପ୍ରସରି,
ମୁଗ୍ଧ ହୋଇ ଧରା ଶୁଣୁ ସେ ସୁସ୍ୱନ
ସଙ୍ଗୀତ-ସୁଧା-ଲହରୀ ।

## ରାଣୀ ଦୁର୍ଗାବତୀ



“ଉଠ ଉଠ ବୀରେ ! ସ୍ୱଦେଶ ଗରବେ
ଟେକ ଉଚ୍ଚ ବୀର-ମଥା ।”

ପୃ ୧୦୦ ଷ୍ଠା

# ସପ୍ତମ ତରଙ୍ଗ

ଥାଏ ଯଦ ସ୍ବର୍ଗେ ସ୍ବଦେଶ-ପ୍ରେମର
ଅନୁରାଗ ଗଜରବ,
ଏ' ସଙ୍ଗୀତ ଶୁଣି ଢାଳନ୍ତୁ ସରାଗେ
ଅକ୍ଷିତ ଦେବତାବର୍ଗ ।
ସରଗର ପୁତ ତୋରଣେ ତୋରଣେ
କର ଏ' ଧ୍ୱନି ସଞ୍ଚାର,
ସ୍ବଦେଶପ୍ରେମିକ ମାନବର ଯଶ
କୀରତି କରୁ ପ୍ରଚାର ।"
ଏହା କହି ରାଣୀ ମାତଙ୍ଗପୃଷ୍ଠେ ଲେ
ସୁବର୍ଣ୍ଣ ହାଉଦା ପରେ,
ବସିଲେ ସରାଗେ ସମର ବାଜଣା
ନିନାଦ ଉଠିଲା ଖରେ ।
ସର୍ବାଗ୍ରେ ଚଳିଲ ଘୋଟକ ଉପରେ
ବସି ବୀର ନାରାୟଣ,
ବାଳ ରବିକରେ ଝଲସି ଉଠଇ
ଯୁବାସୁଲଭ-ବଦନ ।
ସ୍କନ୍ଧଦେଶେ ବୀର ଖୋସିଛନ୍ତି ଯତନେ
ଅଭିମନ୍ୟୁ ଶରାସନ,
କଟୀଦେଶେ ଶୋଭେ ଶାଣିତ ଖଡ୍ଗ
ଜିଣି ତପନକିରଣ ।

# ରାଣୀ ଦୁର୍ଗାବତୀ

ତନୁ ଛଟା ତାର     ତେଡଙ୍କେ ନିନ୍ଦା କରେ
ଗଗନେ ପଦ୍ମନୀପତି,
ସୁଠାମ ସୁନ୍ଦର     ଦୀର୍ଘ ଅବୟବ
ଅତି ପ୍ରଶାନ୍ତ ମୂରତି ।
ନବୀନ ତମାଲ     ଲତିକାକୁ ଜିଣି
ଶୋଭଇ ଗୁରୁ କୁନ୍ତଳ,
ପରିଚ୍ଛଦ ଭେଦ     ଅଙ୍ଗେ ଲାବଣ୍ୟ ଟଳ
ଖେଳୁଅଛି ଢଳ ଢଳ ।
ଉନ୍ନତ ଚିକ୍କଣ     ପ୍ରଶସ୍ତ ଲଲାଟ
କି ଅବା ହେମ ଦର୍ପଣ,
କର୍ଣ୍ଣ ପରିଯନ୍ତେ     ପ୍ରସରି ଶୋଭଇ
ପଦ୍ମ-ପଲାଶ-ନୟନ ।
ବୀର ସୁବିଶାଳ     ବକ୍ଷେ ଶୋଭାପାଏ
ମଞ୍ଜୁଳ କନକ-ହାର,
ଆଜାନୁଲମ୍ବିତ     ଦୀର୍ଘ ବାହୁ ଶୋଭେ
କରୀ ଶୁଣ୍ଡ ପରକାର ।
ସରଗ ଦେବକି ବା     ନର ରୂପେ ଆସି
ବିହାର କରେ ମଦନ,
ଅୟସ କୋଦଣ୍ଡେ     ଭ୍ରମଇ କୁସୁମ—
କୋଦଣ୍ଡ କରି ବର୍ଜନ ।

## ସପ୍ତମ ତରଙ୍ଗ

ସମର ବାଜଣା ତାଳେ ଅଶ୍ୱ ନାଚି
ନାଚି କରଇ ଗମନ,
କି ଏକ ଆବେଗ କ୍ରୋଧେ ଜର୍ଜରିତ
ଆରକ୍ତ ଦଶେ ଲୋଚନ ।
ତା' ପରେ ଚାଲନ୍ତି ପଦାତିକ ସେନା
ଢାଲ୍ କରବାଳ କରେ,
ଧାଡ଼ି ଧାଡ଼ି ହୋଇ ଏକ ସଙ୍ଗେ ପଦ
ପକାନ୍ତି ଧରଣୀପରେ ।
ତୀରନ୍ଦାଜ ସେନା ଧନୁଶର କରେ
ଚାଲନ୍ତି ହରଷଭରେ,
କେହୁ ଅବା ଧନୁ ବାମ କରେ ଧରି
ଗୁଣ ଟଙ୍କାରଇ ଖରେ ।
ଥୋକାଏ ଥୋକାଏ ବାହ୍ୱାସ୍ଫୋଟ ମାରି
ଗମନ୍ତି ହରଷମନେ,
କଟିତଟସ୍ଥିତ ଅସି ଝଲସେ ଲୋ
ବାଳ ସବିତା କିରଣେ ।
ତା' ପରେ ଚାଲନ୍ତି ଅଶ୍ୱାରୋହୀ ସେନା
ଦୋହଲାଇ ଅବୟବ,
ସେନାମୁଖୀଜାତ ଜାତୀୟ ସଙ୍ଗୀତେ
ମିଶିଯାଏ ହ୍ରେଷାରବ ।

ବାଗ ଭଙ୍ଗ କେଉଁ       ଅଶ୍ୱପୃଷ୍ଠେ  କଲେ
ସବେଗେ ପ୍ରହାର ଘାତ,
ଅଗ ବେଳ ଗୋଡ଼       ଉଠାଇ ଉର୍ଦ୍ଧ୍ୱେ ଲେ
ବୁଲିପଡ଼େ ଥୋକେ ବାଟ ।
ସେନାମୁଖଶ୍ରୁତ       ଟାପର ଶବଦେ
ଘୋଟକ କରଇ ନର୍ତ୍ତନ,
ମୁଖ ଭଙ୍ଗି ଭଙ୍ଗି       କେତେ ଭଙ୍ଗୀ ହୋଇ
କରଇ ଧୀରେ ଗମନ ।
ଭୀମ ଭେରୀ ସଙ୍ଗେ       ସମର ବାଜଣା
ଶୁଣି କେଉଁ ଅଶ୍ୱବର,
ଅଟକ ଅଟକ       କୁଦ କୁଦ ପୁଣି
ଗୁଲଥାଏ ଥରଥର ।
ତା' ପରେ ଜଳୁଡ଼େ       ଚଳ ଚଳ ଧୀରେ
ଗୁଲଅଛୁ ପାଟହାତୀ,
ଚଉପାଶେ ତାର       ବେଢ଼ିଛନ୍ତି ସେନା
ଫୁଲଇ ସଗର୍ବେ ଛାତି ।
ସୁବର୍ଣ୍ଣ ହାଉଦା       ଛାଉଣୀ ତଳେ ଲେ
ବସିଛନ୍ତି ରାଜରାଣୀ,
ଦନୁଜ ଦଳନେ       କାତ୍ୟାୟନୀ ଅବା
ଅହା ସେ ଅପୂର୍ବ ଠାଣି ।

## ସପ୍ତମ ତରଙ୍ଗ

ରତନ ବିମାନ ଅବେଦ୍ଧ ଗଗନେ
ଦେଖ ହେ ଅମରଗଣ,
ଭୀଷଣ ସମରେ ଭାରତ ଲଲନା
କରଇ ମୁଦେ ଗମନ ।
ଦେଖିଥିଲ ସିନା କେଉଁକାଳେ କେବେ
ମହିଷାସୁର ସମରେ,
ସମରରଙ୍ଗିଣୀ ଦେବୀ ସୁରେଶ୍ୱରୀ
ଭୀଷଣ ଆୟୁଧ କରେ ।
ଏହିପରି ବୀରେ ଗମିଲେ ହରଷେ
ନିଦାଘ ଅନଳ ପରି,
ମୋଗଲ୍ ସୈନିକ ଅରଣ୍ୟେ ପ୍ରବେଶି
ଦହି ଦେବେ ପରା ଅରି !
ମତ୍ସ୍ୟରଙ୍କା ଯଥା ଊର୍ଦ୍ଧ୍ୱେ ଉଡ଼ି ଉଡ଼ି
ଝାମ୍ପି ପଡ଼େ ମୀନ ପ୍ରତି,
ଘୋରବନେ ଭୀମ ପଶୁରାଜ ଯଥା
କୁରଙ୍ଗେ କରଇ ଗତି ।
ସେହିପରି ରାଜ— ପୁତ ସେନାଗଣ
ଯବନ-ସେନାସାଗରେ,
ଧସାଇ ପଶିଲେ ରଣମଦେ ମାତି
ଭୁଲିଯାଇ ପରସ୍ପରେ ।

# ରାଣୀ ଦୁର୍ଗାବତୀ

କ୍ରମେ ବେନ ପକ୍ଷ      ମିଶିଗଲେ ଖରେ
ବିଜୟୀ ରଣ ଗରବେ,
ଘୋର ଗରଜନେ      ଗଙ୍ଗା ମିଶିଲା କି
ସାଗର ଭୀମ ଗରଭେ ।
ଧବଳ ଉଷ୍ଣୀଷ      ବୀରମୁଣ୍ଡମାଳ
ଫେନିଲ ତରଙ୍ଗ ପରି,
ଭୀମ ବାତ୍ୟାବର୍ତ୍ତେ      ମାଡ଼ିଅସେ କିବା
ବିକଟ ମୂରତି ଧରି ।
ସବିତା କିରଣେ      ଚକ୍ରାକାରେ ଉର୍ଦ୍ଧେ
ଚକଚକେ କରବାଳ,
ସାଗର ତରଙ୍ଗେ      ଓଲଟି କି ଅବା
ଡେଉଁଛନ୍ତି ମୀନମାଳ ।
ଶ୍ୟାମଳ ପର୍ବତ      ଉପତ୍ୟକା ମଧ୍ୟେ
ରାଜପୁତ ସେନାଗଣ,
କି ଅବା ବରଷା      ଆଗମେ ଗଗନେ
ଉଦିତ ଭୀଷଣ ଘନ ।
ଉଡ଼ୁଛି ଉର୍ଦ୍ଧ୍ୱେ ଲେ      ପବନ ହିଲ୍ଲୋଳେ
ବିଜୟ ବୈଜୟନ୍ତୀ,
କଳା ଘନ ତଳେ      ଭାସି କି ଯାଆନ୍ତି
ମାଳାକାରେ ବକପନ୍ତି ।

# ସପ୍ତମ ତରଙ୍ଗ

ଘନ ଗରଜନ ପରାଏ ଶୁଭଇ
କମାଣ ବନ୍ଧୁକ ସ୍ୱନ,
ବାରିଧାରା ପ୍ରାୟ ଗଣି ଗଣି ତୀର
ଶରୀରେ ହୁଏ ପତନ ।
ଏକ ପକ୍ଷେ ରାଜ୍ୟ ଆଶା—ଅନ୍ୟ ପକ୍ଷେ
ସ୍ୱାଧୀନତା ରକ୍ଷା ପାଇଁ,
ଏହିପରି ବେନି ବଳ ଯୁଦ୍ଧ କଲେ
ଗଗନ ବନ କମ୍ପାଇ ।
ବେନି ପକ୍ଷେ ହେଲା ତୁମୂଳ ସମର
ଭୀଷଣୁ ଭୀଷଣତର,
ଗଗନ ପ୍ରାଙ୍ଗଣେ 'ସନ ସନ' ଶବ୍ଦେ
ଗତାୟାତ କଲା ଶର ।
ଉପତ୍ୟକା ମଧ୍ୟେ ପାଞ୍ଚ ହଜାର ଲୋ
ରାଜପୁତ ସେନାଗଣ,
ଅପୂର୍ବ ସାହସେ ଯୁଝୁଛନ୍ତି ନିଜ
ନାୟକେ କରି ବେଷ୍ଟନ ।
କେବେ କେବେ ପୁଣି ପ୍ରଚଣ୍ଡ ବେଗେ ଲୋ
ପଶନ୍ତି ରଣେ ହସାଇ,
ଖଡ଼ଗ ଗୃଳନା କରି ଶତ୍ରୁବକ୍ଷ
ଦାଅନ୍ତି ରକ୍ତେ ଭସାଇ ।

# ରାଣୀ ଦୁର୍ଗାବତୀ

ପର୍ବତ ଶିଖରେ          ତୀରନ୍ଦାଜ ସେନା
ଅତି ସାବଧାନେ ରହି,
ରାଣି ରାଣି ବାଣ          ବରଷି ରୋଷେ ଲୋ
ଅରାତି ଦିଅନ୍ତି ଦହି ।
ଏକ ଦଳ ଯେବେ          ଶତ୍ରୁ ବାଣାଘାତେ
ହୁଅନ୍ତି ରଣେ ନିଧନ,
ଆଉ ଏକ ଦଳ          କ୍ଷିପ୍ର ଗତିରେ ଲୋ
କରନ୍ତି ସ୍ଥାନ ପୂରଣ ।
ଦିଲ୍ଲୀର ଅସଂଖ୍ୟ          ସେନାଙ୍କ ସମ୍ମୁଖେ
ପଞ୍ଚ ସହସ୍ର ମାତର,
ରାଜପୁତଗଣ          ଅସୀମ ସାହସେ
ଯୁଦ୍ଧ କଲେ ଘୋରତର ।
ଏହି ସମରର          ବିଷମ ଉତ୍ସବେ
ରାଜ୍ୟେଶ୍ୱରୀ ଦୁର୍ଗାବତୀ,
ନ ଥିଲେ ପଶ୍ଚାତେ          ପବନ ପରି ଲୋ
କରୁଥିଲେ ତହିଁ ଗତି ।
କେତେବେଳେ ରାଣୀ          ମାତଙ୍ଗ ଉପରେ
ବସି ଛାଡୁଥିଲେ ଶର,
କେତେବେଳେ ଅବା          କରପୃଷ୍ଠୁ ଖସି
ଉଭା ଧରଣୀ ଉପର ।

## ସପ୍ତମ ତରଙ୍ଗ

ଯେଉଁଠାରେ ଦେବୀ ଦେଖିଲେ ଯବନ
ଶତ୍ରୁ ଭ୍ରମ ଅକ୍ରମଣ,
ସେହି ବେଗେ ତୀବ୍ର ଗଡରେ ଧାଇଁଲେ
ଅଶ୍ୱ କରି ଆରୋହଣ ।
ସେନାଦଳ ପଛେ ବଲମ ଧରି ଲେ
ଉଭା ହୋଇ ରାଜରାଣୀ,
ଜଲଦ ଗମ୍ଭୀର ଗୁରୁ କଣ୍ଠେ ତହିଁ
ଭାଷିଲେ ଉତ୍ତେଜ ବାଣୀ ।
ମହାଷୀ ଅଭୟ— ଭୈରବ ଗର୍ଜନେ
ରାଜପୁତ ସେନାଗଣ,
ଧସାଇ ପଶିଲେ ଯବନ ମସ୍ତକ
ଖଡ଼ଗେ କରି ଛେଦନ ।
ଏହାପରି ଚତୁ— ର୍ଦ୍ଦିଗେ ରାଜପୁତେ
କଲେ ବିଶାଳ ସମର,
ଏ’ ମହାବିକ୍ରମ ନିରେଖି ଯବନ
ଭୟେ ହେଲା ଥରହର ।
ଶେଷ ଥରି ଯାଏ ପ୍ରାଣପଣେ ଯୁଝି
ସହି ନ ପାରିଲେ ଆଉ,
ଶିବାପଲ ପ୍ରାୟେ ଛତ୍ରଭଙ୍ଗ ଦେଲେ
ନିରେଖି ସମର ଦାଉ ।

ଏ ସମୟେ ଊର୍ଦ୍ଧ୍ୱେ ବୁଡ଼ିଲେ ତପନ
ବାରୁଣୀ ରକ୍ତ ଗଗନେ,
ରାଜପୁତଙ୍କର ବିଜୟ ଉଲ୍ଲାସ
ଶୁଣି ଦିବ୍ୟ ଶରବଣେ ।

---

## ଅଷ୍ଟମ ତରଙ୍ଗ



**ମୋ**ଗଲ୍ ସମରେ ସ୍ୱଦେଶର ପାଇଁ
ରାଜପୁତ ସେନାଗଣ,
ହସି ହସି ହର୍ଷେ ମହା ଦର୍ପଭରେ
ପ୍ରାଣ ଦେଲେ ବିସର୍ଜନ ।
ଅବଶିଷ୍ଟ ତିନ ସହସ୍ର ମାତର
ଘେନି ରାଣୀ ମୁଦ ମନେ,
ଫେରିଲେ ଶିବିରେ ବିଜୟ ନିଶାଣ
ଉଡ଼ାଇ ମୁକ୍ତ ଗଗନେ ।

# ରାଣୀ ଦୁର୍ଗାବତୀ

କ୍ରମେ ରାତ୍ରି ଦେବୀ  ଜଗତେ ଶୁଣାଇ
ଝିଲ୍ଲୀ ନୂପୁର ନିକ୍ୱଣ,
ଚନ୍ଦ୍ରମା କିରଣେ  ହସି ହସି ଦେଲା
ଦ୍ୱିତୀୟ ଯାମେ ଚରଣ ।
ନୀରବ ନିଥର  ବନ ଧରଣୀ ଲୋ
ନାହିଁ ଆଉ କୋଳାହଳ,
ବେଳେ ବେଳେ ମାତ୍ର  ବହୁଛି ଅନିଳ
ହଲାଇ ବିଟପୀ ଦଳ ।
କୌମୁଦୀପ୍ଲାବିତ  ପର୍ବତସ୍ଥଳୀର
ଉଚ୍ଚ ଉପତ୍ୟକା ପରେ,
ନିଦ୍ରିତ ଶିବିରେ  ରାଜପୁତ ସେନା
ଶଙ୍କାଶୂନ୍ୟ ହୃଦୟରେ ।
ଏପରି ସମୟେ  ଆସଫ ଖାଁ ଲୋ
ନୂତନ ବାହିନୀ ଧରି,
ନିଃଶବ୍ଦେ ମିଳିଲା  ସହସା ନିକଟେ
ଗୁପ୍ତ ରାତ୍ରିଚର ପରି ।
ବନ ଅନ୍ତରାଳେ  ଗଭୀର ନିଶୀଥେ
ଗୋପନେ ଗୁଳି ପଯ୍ୟର,
ଲକ୍ଷ ଲକ୍ଷ ସେନା  ସୁପ୍ତ ଶିବିରେ ଲୋ
ହେଉଛନ୍ତି ଅଗ୍ରସର ।

# ଅଷ୍ଟମ ତରଙ୍ଗ

ଅଠକ ଅଠକ ସେନାପତି ସେନା
ଚଲା ଏ ଅତି ଗୋପନେ,
ଶିବିରରୁ କମେ ଶତ ହସ୍ତ ଦୂରେ
ମିଳିଲେ ଅସି ଯବନେ ।
ଅସଫ୍ ଖାଁ ତହୁଁ ଅନାଇ ଦେଖିଲ
ଶତ୍ରୁ ଶିବିର ପ୍ରହରୀ,
ସନ୍ଧଗ୍ଧ ଲୋଚନେ ଅଗକୁ ଅସୁଛି
ପଦଶବ୍ଦ ଅନୁସରି ।
ସେନାପତି ଗୁପ୍ତ ଇଙ୍ଗିତେ ଜଣେ ଲେ
ପ୍ରଚଣ୍ଡ ଯବନ ବୀର,
ତରୁ ଅନ୍ତରାଳ ପ୍ରହରୀ ଉଦ୍ଦେଶ୍ୟ
ନିଃଶବ୍ଦେ ଛାଡ଼ିଲା ତୀର ।
ଅବ୍ୟର୍ଥ ନିକ୍ଷିପ୍ତ ଶାଣିତ ଶାୟକ
ବାଜିଲା ମସ୍ତକ ତଳେ,
ପ୍ରହରୀ ପରାଣ— ଶୂନ୍ୟ ଶରୀର ଲେ
ଖସି ପଡ଼ିଲା ଭୂତଳେ ।
ପତନ ଶବଦ ଶୁଣି ରାଜପୁତେ
ଜଣେ ଜଣେ ସେହି ସ୍ଥଳେ,
ଏକ ଦୁଇ କମେ ଦଳ ଦଳ ଅସି
ମିଳିତ ହେଲେ ସକଳେ ।

# ରାଣୀ ଦୁର୍ଗାବତୀ

ଦେଖିଲା ଅସ୍ତ୍ର ଅସ୍ତ୍ର ସଂଗୋପନେ
ଉପାୟ ନାହିଁ ମାତର,
ଗମ୍ଭୀର ଗର୍ଜନେ ଆଦେଶିଲ ତହୁଁ
ହେବା ପାଇଁ ଅଗ୍ରସର ।
ରଜନୀ ରାଣୀର ଯୋଗ୍ୟ ଅଲଙ୍କାର
ନୀରବତା ଭଙ୍ଗ କରି,
'ଜୟ ଅକବର' ସମର ନିନାଦେ
କମ୍ପାଇଲେ ଗିରିଦରୀ ।
ଅର୍ଦ୍ଧ ରଜନୀରେ ଯବନବାହିନୀ
ସମର ଦୁନ୍ଦୁଭିନାଦ,
ଶୁଣି ଅତର୍କିତେ ରାଜପୁତଗଣ
ଗଣିଲେ ମନେ ପ୍ରମାଦ ।
ଅକସ୍ମିତ ବକ୍ଷେ ରାଣୀ ଦୁର୍ଗାବତୀ
ଏକ ଶତ ସେନାଗଣ,
ଧନୁ ତୀର କରେ ସଜ୍ଜିତ କରି ଲେ
ସମ୍ମୁଖେ କଲେ ପ୍ରେରଣ ।
ରାଣୀଙ୍କ ଆଦେଶେ ଅଗ୍ରେ ବୃକ୍ଷ ତଳେ
ଶତ ତୀରନ୍ଦାଜ ବୀର,
ବର୍ଷାବିନ୍ଦୁ ପରି ଶତ୍ରୁ ଶରୀରେ ଲେ
ବିନ୍ଧିଲେ ଅସଂଖ୍ୟ ତୀର ।

## ଅଷ୍ଟମ ତରଙ୍ଗ

ଏହି ଅବସରେ ରାଣୀ କ୍ଷିପ୍ର ବେଗେ
ସୈନ୍ୟଙ୍କେ କରି ଅହ୍ୱାନ,
ପଞ୍ଚମ ସ୍ୱରରେ ଅର୍ଦ୍ଧ ଚନ୍ଦ୍ରାକାରେ
ରଚିଲେ ବ୍ୟୂହ ଭୀଷଣ ।
ପଶ୍ଚାତେ ରହିଛି ପ୍ରାକାର ପରି ଲୋ
ନଭସ୍ପର୍ଶୀ ଗିରିମାଳା,
ସେହି ଦିଗେ ଆଉ ରହିବ ନାହିଁଟି
ଅରାତି-ସମର-ଜ୍ୱାଳା ।
ମୁହୂର୍ତ୍ତକ ପରେ ଭୀଷଣ ସାହସେ
ଶତ୍ରୁ କଲା ଆକ୍ରମଣ,
ସେ ଭୀମ ନିର୍ଘାତ ଝଞ୍ଜା ପବନେ ଲୋ
ନୋହିଲା ବ୍ୟୂହ କମ୍ପନ ।
ଏପରି କୌଶଳେ ନିର୍ମିତ ସେ ବ୍ୟୂହ
ଏଡ଼େ ସଂକୀର୍ଣ୍ଣ ସେ ପଥ,
ଶତରୁଁ ଅଧିକ ଶତ୍ରୁ ସେନାଗମେ
ନୋହିଲେଟି ସମରଥ ।
ତଥାପି ଅରାତି ସିଂହ ଗର୍ଜନେ ଲୋ
ଜୟ ଆଶା ହୃଦେ ଧରି,
ଆକ୍ରମିଲା ବାର ତାର ଅଦ୍ଭୁତ
ବିକ୍ରମ ପ୍ରକାଶ କରି ।

# ରାଣୀ ଦୁର୍ଗାବତୀ

ସାଗର ପୁଳନେ    ଗିରଗାନେ ଯଥା
ଉତ୍ତାଳ ତରଙ୍ଗଗଣ,
ପ୍ରତିହତ ହୋଇ    ଦୁର୍ବଳ ଶରୀରେ
କରନ୍ତି ପ୍ରତି ଗମନ ।
ସେହିପରି ଶତ୍ରୁ    ପ୍ରଚଣ୍ଡ ବେଗରେ
ଅନ୍ତମେ ବଜାଇ ଭେରୀ,
ଭଗ୍ନୋତ୍ସାହେ ପୁଣି    ବାର ବାର ହୋଇ
ପଛକୁ ଅସଇ ଫେରି ।
ଉଭୟ ପକ୍ଷରୁ    ଗଣି ଗଣି ଶବ
ଗଡ଼ିଲେ ଅବନୀତଳେ,
ଏକର ପତନେ    ଶବରାଶି ପରେ
ଉଭା ଅସି ଅନ୍ୟ ଦଳେ ।
ପ୍ରାଣପଣେ ଯୁଝି    ଯବନ ବ୍ୟୂହ କୁ
ଭେଦ ତ ପାରିଲେ ନାହିଁ,
ଭୀଷଣ ଆହବେ    ଏଡ଼େ ବଡ଼ ଦୀର୍ଘ
ଖସି ଗଲା ପଛେ ପାଦ ।
ଏକାଳେ ନବୀନ    ଅରୁଣ ପରାଚୀ
ଗଗନେ ହେଲେ ଉଦିତ,
ଦେଖିଲେ ଅରଣ୍ୟ    ତରୁ ଲତା ପତ୍ର
ନର ରକତେ ରଞ୍ଜିତ ।

# ଅଷ୍ଟମ ତରଙ୍ଗ

ତପନ ଉଦୟେ  କ୍ଷୀଣ ଚନ୍ଦ୍ରିକା ଲେ
ଖରେ କଲ ପଳାୟନ,
ଆଲୋକ ଜ୍ୟୋତରେ  ଉଜ୍ଜ୍ୱଳ ଦିଶିଲା
ଧରଣୀ ବନ ଗଗନ ।
ବ୍ୟୁହ ସମ୍ମୁଖରେ  ବୀର ନାରାୟଣ
ଘୋଟକ ଉପରେ ବସି,
ଦେଖିଲା ଯବନ  ସଇନ୍ୟକ ମଧ୍ୟେ
ଆସଫ୍ ଖାଁ କରେ ଅସି ।
କମାଣ ଗର୍ଜନେ  ସ୍ୱର ମିଶାଇ ଲେ
ବୋଇଲା କୁମାର ରାଗେ,
"ଲଜ୍ଜା ନାହିଁ ମୁଖେ  ଯବନ ପାମର
ଉଭା ହୋଇଅଛୁ ଆଗେ ।
ଆସିଅଛୁ ପର  ରାଜପୁତ ସଙ୍ଗେ
ଦେଖାଇବୁ ବୀରପଣ,
ମନେ କରିଅଛୁ  କୁରଙ୍ଗ କରେ ବେ
କେଶରୀ ହେବ ନିଧନ ।
ନ ଜାଣୁ ପାମର !  ଯବନ ଦଳନେ
ଉଭା ବୀର ନାରାୟଣ,
ଛାଗଲ ପରି ରେ  ଗୋଟି ଗୋଟି ମଥା
କରିବ ଅଙ୍ଗ ଛେଦନ ।"

# ରାଣୀ ଦୁର୍ଗାବତୀ

ଏହା କହି ବୀର — ଫଣୀକୁଳେ ଯଥା
ଅକ୍ରମଇ ଖଗପତି,
ସେହିପରି ଶତ୍ରୁ — ସଇନ-ସାଗରେ
ଧସାଇ ହେଲା ଝଟତି ।
କେଶରୀ ଶାବକ — କ୍ଷତ୍ରିୟଗୌରବ
ବୀର ରଣବିଶାରଦ,
ଭ୍ରମିଲା ଗରବେ — ପଦ୍ମବନେ ଯଥା
ଭ୍ରମଇ ମତ୍ତ ଦ୍ୱିରଦ ।
ସମର ଶିକ୍ଷିତ — ଅଶ୍ୱପୃଷ୍ଠେ ବୀର
ଘୁଟଣୀ କଲା ପ୍ରହାର,
ଶତ୍ରୁ ବକ୍ଷେ ତୀବ୍ର — ବର୍ଚ୍ଛା ମାରି ରଣେ
ଭ୍ରମିଲା ଚକ୍ରାକାର ।
କୁମାର ପଶନ୍ତେ — ବ୍ୟୂହ ସମ୍ମୁଖରେ
ପ୍ରଥମ ସେନାନୀଗଣ,
'ଜୟ ଜୟ' ରବେ — ଅଭୂତ ବିକ୍ରମେ
ଅରାତି କଲେ ଦଳନ ।
କେହି କାହାକୁ ଠେଲି — ଗଡ଼ାଇଲେ ତଳେ
ବିନ୍ଧି ସୁତୀକ୍ଷ୍ଣ ସାୟକ,
ବିପକ୍ଷକୁ ପୁଣି — ନିବାରିଲେ ବଳେ
ଧରି ବିଶାଳ ଫଳକ ।

# ଅଷ୍ଟମ ତରଙ୍ଗ

ବୁଲାଇ ବୁଲାଇ ସୁଶାଣିତ ଅସି
ଶତ୍ରୁ ଶିର ଦେଲେ କାଟି,
କଟା ଶିର ଧରି ସରୋଷେ ଫିଙ୍ଗନ୍ତେ
ଆନ ଶିର ଗଲା ଫାଟି ।
କାହାର ମସ୍ତକ କାହା କର୍ଣ୍ଣ ପୁଣି
କାଟିଲେ କାହାର କର,
ନିର୍ଦ୍ଦୟେ କାହାର ବକ୍ଷ ବିଦାରିଲେ
ଛେଦିଲେ କାହା ପୟର ।
ନକୁଳ ଦର୍ଶନେ ମହାତ୍ରାସେ ଯଥା
ଗର୍ତ୍ତେ ପଳାଏ ଭୁଜଙ୍ଗ,
ରାଜପୁତ ଦର୍ପେ ଯବନବାହିନୀ
ଭୟେ ରଣେ ଦେଲେ ଭଙ୍ଗ ।
ସଇନ ପଳାନ୍ତେ ପ୍ରବଳ ବିକ୍ରମେ
ଯବନ ସେନାନାୟକ,
ନାରାୟଣ ଅଗ୍ରେ ଉଭା ହେଲା ଆସି
ଦେଖାଇ ଅସି ଫଳକ ।
ଅଶ୍ୱପୃଷ୍ଠେ ବେନି ଘୂରି ଘୂରି ହୋଇ
କଲେ ବିଷମ ସମର,
ଅଶ୍ୱ ପଦାଘାତେ ଧୂଳିକଣା ଉଡ଼ି
ଦିଶିଲା ଲୋ ଭୟଙ୍କର ।

# ରାଣୀ ଦୁର୍ଗାବତୀ

ଯୁଝିଲେ ବେନିଏ    ଖଡ଼ଗେ ଖଡ଼ଗେ
ଶାୟକେ ଶାୟକେ ପୁଣ,
ଅଶ୍ୱପୃଷ୍ଠେ ତୀକ୍ଷ୍ନ    ଶାୟକ ବାଜିଲେ
ଅଙ୍ଗ ହେଉଥାଏ ଝୁଣି ।
ବେନି ବୀରଙ୍କର    ଅଦ୍ଭୁତ ସଂଗ୍ରାମ
ନିରେଖି ସେନାନୀଗଣ,
ରଣ ଛାଡ଼ି କାଷ୍ଠ    ପଥର ପରି ଲେ
କଲେ ସର୍ବେ ଦରଶନ ।
ଦେଖିଲା କୁମାର    ବେତ୍ତ ବେତ୍ତ ଶତ୍ରୁ
ହେଉଅଛି ଅବସନ୍ନ,
ଦେଖୁଁ ଦେଖୁଁ ତାର    କଳା ପଡ଼ୁଅଛି
ରକ୍ତତରଞ୍ଜା ବଦନ ।
କିନ୍ତୁ ଏକ ସହସା    ଅରାତି ମଧ୍ୟୁ ଲେ
କ୍ଷେପିଲା ବିଷମ ଶର,
ବକ୍ଷେ ବାଜି ଗଲା—    ତନୟ ପଡ଼ିଲା
ଅଚେତନେ ଧରା ପର ।
କୁମାର ପଡ଼ନ୍ତେ    ଦାବାନଳ ପରି
ରାଜପୁତ ସେନାଗଣ,
ଜ୍ଞାନଶୂନ୍ୟ ହୋଇ    ଘୋର ଗରଜନେ
ଜାଳିଲେ ଅରାତି-ବନ ।

## ଅଷ୍ଟମ ତରଙ୍ଗ

ତନୟ ପତନ ସମ୍ବାଦ ଶ୍ରବଣେ
ଧାଇଁଲେ ଖେଦେ ଜନନୀ,
ଦେଖିଲେ ପଡ଼ିଛି ବାଲକେଶରୀ ଲେ
ମଣ୍ଡି ସେ ରଣଧରଣୀ ।
ସଜ ପ୍ରସ୍ଫୁଟିତ ଅମଳ କମଳ
ବଦନ ଅଭ୍ର ରଞ୍ଜିତ,
ପ୍ରଶାନ୍ତ ଗମ୍ଭୀର ଶାନ୍ତ ଶୟନେ ଲେ
ନୟନ ବେନି ମୁଦ୍ରିତ ।
ବକ୍ଷସ୍ଥଳ ରକ୍ତ ସ୍ରୋତ ବୁହାଇ ଲେ
ମଣ୍ଡିଛି ବନ ଧରଣୀ,
ଚେତନା ହରାଇ ପଡ଼ିଅଛି ତଳେ
ମହାର୍ଘୀ ହୃଦୟ-ମଣି ।
ଦୁଃଖେ ଦୀର୍ଘଶ୍ୱାସ ଛେଡ଼ି ରାଜରାଣୀ
ଲୋତକଭରା ନୟନେ,
ମସ୍ତକୁ ଚରଣ ପର୍ଯ୍ୟନ୍ତେ ଥରେ
ଦେଖିଲେ ଶିଷ୍ଟାଦମନେ ।
ହତାଶ ହୋଇ ଲେ ତଳେ ବସି ରାଣୀ
ଚୁମ୍ବିଲେ ଶୁଷ୍କ କପୋଳେ,
ବେନି କରେ ତହୁଁ ତନୟ ମସ୍ତକ
ସ୍ଥାପିଲେ ଅପଣା କୋଳେ ।

# ରାଣୀ ଦୁର୍ଗାବତୀ

ଗଦଗଦ କଣ୍ଠେ                ଫୁଲଫଳ ପରେ
ବୋଇଲେ "ରେ ପ୍ରାଣଧନ !
ଯୁଦ୍ଧ ନ ସରୁଣୁ                କେଉଁଦେଶେ ବଳା
ପଳାଇଯାଉ ଏ' କ୍ଷଣ ।
ଉଠ ଉଠ ମୋର                ନୟନ ସଞ୍ଚାଳି
ତେଜ ଏ' ମାନ ଶୟନ,
କେମନ୍ତେ ସହିବୁ                ପିତୃରାଜ୍ୟେ ତୋର
ପଶିବ ବଳେ ଯବନ ।
ନ ଶୁଣୁ କିପାଇଁ                ସତେ କି ବଳା ରେ
ସମରେ ଯିବୁ ପଳାଇ,
ଯବନର ଏହି                ଦାରୁଣ ଅନ୍ୟାୟ
ବାପାଙ୍କୁ କହିବା ପାଇଁ ।"
କହୁଁ କହୁଁ ଦେବୀ                ବିମ୍ବ ଓଷ୍ଠ ବେନି
ରୋଷେ ହେଲା ବିକମ୍ପିତ,
କ୍ରମେ କ୍ରମେ ହେଲା                ବଦନମଣ୍ଡଳ
ଅରୁଣରାଗେ ରଞ୍ଜିତ ।
ଉଠୁଁ ଧୀରେ ଦେବୀ                ରୁଦ୍ଧ ନିଶ୍ୱାସେ କଲେ
ଦନ୍ତେ ଦନ୍ତ ନିଷ୍ପେଷଣ,
କର ବେନି କରେ                ଆପଣା ମସ୍ତକ
ସରୋଷେ କଲେ ଧାରଣ ।

# ଅଷ୍ଟମ ତରଙ୍ଗ

ସେତେ ଥର ଥର ଉଠିଲେ ଲଲନା
ଅଙ୍ଗେ ବିଦ୍ୟୁତ ଖେଳାଇ,
ଶତ୍ରୁ ମୁଖେ ଥରେ ଘୂର୍ଣ୍ଣିତ ନୟନେ
ତର୍ଛି ଦେଲେ ଅନାଇ ।
ବୋଇଲେ "ନିର୍ମମ କୁଳାଙ୍ଗାର ସ୍ୱୈର
ବିଶ୍ୱାସଘାତକଗଣ,
ଅସ୍ପୃଷ୍ଟ କୁସୁମେ ବୃନ୍ତଚ୍ୟୁତ କଲ
ଏ' କି ଧର୍ମ ଆଚରଣ !
ହିନ୍ଦୁ ନାରୀ ମୁହିଁ ଯଦି ଧର୍ମ ଥାଏ
ବିଶ୍ୱେ ବ୍ୟାପି ନିରନ୍ତର,
ଅକାଳେ ଯବନ ଦର୍ପ ଚୂର୍ଣ୍ଣ ହେବ
ରାଜ୍ୟ ହେବ ହସ୍ତାନ୍ତର ।
ଊର୍ଦ୍ଧ୍ୱେ ରହି ଦେଖ ନୀରବ ନୟନେ
ହେମମୟ ଦିବାକର,
ସାକ୍ଷୀ ଥାଅ ବିଶ୍ୱ ଖଗ ବାୟୁ ପୁଣି
ବିଶ୍ୱବାସୀ ଚରାଚର ।
ସତୀ ନେତ୍ରାଗତ ଅଶ୍ରୁ ଏକ ବିନ୍ଦୁ
ନାଶିବ ଲକ୍ଷ ଯବନ,
ଯଦି ଦୁର୍ବଳାର ବଳ ବିଶ୍ୱକର୍ତ୍ତା
ସତ୍ୟସାର ସନାତନ ।"

# ରାଣୀ ଦୁର୍ଗାବତୀ

ଉଭା ହୋଇ ପୁଣି          ନିଜ ଅବଶିଷ୍ଟ
ଉନ ଶତ ସେନା ପ୍ରତି
ସର୍ବଶେଷେ ବୋଇଲେ          "ଉଠ ଉଠ ବୀରେ !
ଉଡ଼ାଇ ବଇଜୟନ୍ତୀ ।
ସମ୍ମୁଖ ସମରେ          କୁମାର ପତନେ
ବିଷାଦିତ ନୁହ ମନେ,
କ୍ଷତ୍ରିୟର ଯାହା          କର୍ତ୍ତବ୍ୟ ଧରମ
ପାଳିଛୁ ସୁତ ପତନେ ।
ସ୍ୱଦେଶଗୌରବ          ଉଦ୍ଧାର ବ୍ରତରେ
ବ୍ରତୀ ଅଛେ ଯା' ପରାଣ,
କେବେ କି କେହି ସେ          ଲେଉଟିବ ଡରେ
ନିରେଖି ଅରାତି ବାଣ ।
ଯାବତ ହୃଦୟ          ଭୀଷଣ କନ୍ଦରେ
ବହୁଛି ପରାଣ ବାୟୁ,
ଯାବତ ବିକ୍ରମୀ          ଶତ କେଶରୀର
ବଳ ବହୁଅଛି ବାହୁ ।
ତାବତ ହେ ବୀରେ          ମାତୃଭୂମି ନାମେ
ପ୍ରବେଶ ସମରାଙ୍ଗଣେ,
ପୂତ ଯଜ୍ଞାନଳେ          ଜୀବାହୁତି ଢାଳି
ଧନ୍ୟ ହୁଅ ଏ' ଜୀବନେ ।

## ଅଷ୍ଟମ ତରଙ୍ଗ

ଧର ଧର କରେ ଶାଣିତ କୃପାଣ
କର ବେଗେ ଉତ୍ତୋଳନ,
ଧାଅଁ ଧାଅଁ ଖରେ ବିକ୍ରମ ପ୍ରକାଶି
ଯବନେ କର ଦଳନ ।
ଯାଉ ଧନ ଧାନ୍ୟ ସ୍ୱଜନ ସମ୍ପତ୍ତି
ଯାଉ ପଛେ ଏହୁ ପ୍ରାଣ,
ନ ଫେର ହେ ଅଜ୍ଜି ଆପଣା ସଦନେ
ସହି ଏ' ଅରାତି ବାଣ ।
ଫେରିବ ଯଦ୍ୟପି ରହିବ ଜଗତେ
ଚିରଦିନ ଅପଖ୍ୟାତି,
ବୋଲିବେ ସମସ୍ତେ ମହାରଣଭୀରୁ
ଏହୁ ରାଜପୁତ ଜାତି ।
ଅରାତି ସମ୍ମୁଖୁ ପୃଷ୍ଠଭଙ୍ଗ ଦେଇ
କେବେ ନ ଫେରିବ ଆଜି,
ମାରି ନ ପାରିଲେ ନିଜ ଅସ୍ତ୍ରାଧାରେ
ନିଜ ପ୍ରାଣ ପଛେ ଯାଉ ।"
ଏ' ବାଣୀ ଶ୍ରବଣେ ନବ ତେଜେ ସେନା
ଉଠିଲେ ହୋଇ ହରଷ,
ଖଡ୍ଗ ଢାଲ ଧରି ପ୍ରବେଶିଲେ ରଣେ
ଦେଖାଇ ଭୀମ ସାହସ ।

# ରାଣୀ ଦୁର୍ଗାବତୀ

"ଜୟ ଦୁର୍ଗାବତୀ" ବୋଲି ଶତ ଶତ
ଶତ୍ରୁ ନାଶ କଲେ ପଣି,
ଅରାତି ବକ୍ଷର ରୁଧିରେ ଲୋହିତ
ଦଶେ ତୀକ୍ଷ୍ଣଧାର ଅସି ।
"ନିଶ୍ଚିନ୍ତ ଶୟନେ ଶୋଇଥା ସଙ୍ଗାତ"
ବୋଲି ସେ ସଜ ଲପନେ,
ଚୁମ୍ବନ୍ତେ ଜନନୀ ବୀର ନାରାୟଣ
ମୁହିଁଲା ଧୀର ନୟନେ ।
ଦାରୁଣ ଶାୟକ ବେଦନା ଆଘାତେ
ମୁଖେ ନ ଫୁଟିଲା କଥା,
ନ କାନ୍ଦ ଜନନି ବୋଇଲା କି ଅବା
ଇଙ୍ଗିତେ ହଲାଇ ମଥା ।
ସମ୍ମୁଖେ ଯବନ ଭୀମ ଆକ୍ରମଣ
ଦେଖି ରାଣୀ ଦୁର୍ଗାବତୀ,
ଅନୁଚର କରେ ଅରପି ତନୟେ
ରଣାଙ୍ଗନେ କଲେ ଗତି ।
ମାତଙ୍ଗପୃଷ୍ଠେ ଲୋ ଅସେନ୍ଧୁ ସମରେ
ଭ୍ରମି ଭ୍ରମି ରାଜରାଣୀ,
ଶାଣିତ ଶାୟକେ ହାଣି ହାଣି ଶତ୍ରୁ
ଭାଷିଲେ ଉତ୍ତେଜ ବାଣୀ ।

# ଅଷ୍ଟମ ତରଙ୍ଗ

ଅହା କି ବିଚକ୍ଷଣ ବିକ୍ରମେ ସମର
କରୁଛନ୍ତି ଦୁର୍ଗାବତୀ,
କିଏ ଜାଣିଥିଲା ନାରୀ ହୃଦୟେ କି
ନିହିତ ଏତେ ଶକତି ।
ଏହାପରେ ନବ ଘଟିକା ପର୍ଯ୍ୟନ୍ତ
ଯୁଦ୍ଧ ହେଲା ଅବିରତ,
ନବ ଦୂର୍ବାଦଳ ରକତେ ରଞ୍ଜିତ
ହତ ଶତ୍ରୁ ଶତ ଶତ ।
ସମରରଙ୍ଗିଣୀ ମହିଷମର୍ଦ୍ଦିନୀ
ନାଶିଲେ ଯଥା ଦାନବେ,
ସେହିପରି ଆଜି ରାଣୀ ଦୁର୍ଗାବତୀ
ନାଶିଲେ ମ୍ଳେଚ୍ଛ ମାନବେ ।
ରଣଚଣ୍ଡୀରୂପେ ପ୍ରବଳ ବେଗରେ
ରଚିଲେ ଦେବୀ ସଂଗ୍ରାମ,
ବିନ୍ଧୁଥିଲେ ବାଣ ଅନର୍ଗଳ ରୂପେ
ନ ଲଭି ଥରେ ବିଶ୍ରାମ ।
ସହସା ଯବନ ଅସ୍ତ୍ରତ ପ୍ରେରିତ
ତୀକ୍ଷ୍ଣ ମୁନା ଏକ ଶର,
ବିଦ୍ଧ ହେଲା ଖରେ ବିଶାଳନୟନା
ବିଶାଳ ନେତ୍ର ଭିତର ।

ତଥାପି ସମରେ ନ ହୋଇ କାତର
କାଢ଼ିଲେ ଶର ଯତନେ,
କାଢ଼ୁଁ କାଢ଼ୁଁ ଅଧା ଭାଙ୍ଗି ଶାଯ୍ୟକ ଲୋ
ରହିଲା ଖଣ୍ଡେ ନୟନେ ।
ଗୃହୁଁ ଗୃହୁଁ ପୁଣି ଅନ୍ୟ ଏକ ଶର
ପଶିଗଲା ଗ୍ରୀବା ସ୍ଥଳେ
ମାତଙ୍ଗପୃଷ୍ଠରୁ ଜ୍ଞାନଶୂନ୍ୟା ହୋଇ
ତଳ ପଡ଼ିଲେ ଭୂତଳେ ।
କିଛିକ୍ଷଣ ପରେ ଚେତନା ପାଇଲେ
ଅନାଇ ଦେଖିଲେ ରାଣୀ,
ବିଶ୍ୱସ୍ତ ଅଧରେ * ପାଶେ ଦେଖି ତାଙ୍କୁ
ଭାଷିଲେ ଏକଲେ ବାଣୀ ।
"ଦେଖ ଦେଖ ବୀର ତୁମ୍ଭେହିଁ ମୋହର
ଉପଯୁକ୍ତ ସୁସନ୍ତାନ,
କେତେ ଉପକାର ସାଧିଛ ମୋହର
ତୁଚ୍ଛ କର ତବ ପ୍ରାଣ ।

---

* ଅଧରେଙ୍କ ରାଣୀଙ୍କର ଜଣେ ବିଶ୍ୱସ୍ତ ମନ୍ତ୍ରୀ । ସେତେବେଳେ ଯୁଦ୍ଧକ୍ଷେତ୍ରରେ ସେ ଦୁର୍ଗାବତୀଙ୍କ ହସ୍ତୀଚାଳନା କରୁଥିଲେ ।

# ଅଷ୍ଟମ ତରଙ୍ଗ

ଅନ୍ତିମ ସମୟେ ଏତିକ ମାଗୁଣି
ନିବାରଣ କରିବ ନାହିଁ,
ତୁମ୍ଭ ପରି ସୁତ ଥାଉଁ ଯବନ ହେ
ଦେହ ଛୁଇଁବ କିପାଇଁ ?
ଏଣୁ ବୀର ! ତବ ଶାଣିତ କୃପାଣ
କର ମୋ କଣ୍ଠେ ପ୍ରହାର,
ମାତୃ ଆଜ୍ଞାରୂପେ ଶୀଘ୍ର କର ମୋତେ
ଯବନ କରୁ ନିସ୍ତାର ।"
ଅହା ରେ ପାଷାଣ— ହୃଦୟ କେ ଅଛି
ଜନମି ଏହି ଜଗତେ,
ସନ୍ତାନ ହୋଇ ଲେ ଜନନୀ ମସ୍ତକ
ଛେଦିବ ପୁଣି ସ୍ୱହସ୍ତେ !
ଛଳ ଛଳ ନେତ୍ରେ ବାଷ୍ପରୁଦ୍ଧ କଣ୍ଠେ
ଭଣିଲ 'ଅଧର' ବାଣୀ,
"ତବ ଅନ୍ନ ଖାଇ ତୁମ୍ଭଙ୍କୁ ବଧିବ
କ୍ଷମାକର ରାଜରାଣି !
ଏପରି ପାଷଣ୍ଡ କୁମର ମାଆ ଗୋ
କିଏ ଅଛି ଧରାତଳେ,
ନିର୍ମମ ହୃଦୟେ କରବାଳ କରେ
ମାଆକୁ ବଧିବ ବଳେ ।

# ରାଣୀ ଦୁର୍ଗାବତୀ

ଆଦେଶନ୍ତୁ ଦେବ ! କବରେ ବସାଇ
ରାଜପୁରେ ଯିବ ଯେଣ,
ନବ ସେନା ସହ ଅରାତି ଶୋଣିତେ
ବୁହାଇ ଦେବ ନିବେଣୀ ।”
ଅଧର ସିଂହର କାତର ବଚନ
ଶୁଣି କହନ୍ତେ ଦୁର୍ଗାବତୀ,
ସକ୍ରୋଧେ ବୋଇଲେ “ବୀରପୁତ୍ର ମୁଖେ
ନ ଶୋଭେ ଏହି ଭାରତୀ ।
ରାଜପୁତ ନାରୀ ବୀର ଘରଣୀ ମୁଁ
ଲୋଡ଼ନ୍ତି ଯିବ ଭବନେ,
ଅକଳଙ୍କ ଏହି କ୍ଷତ୍ରିୟ କୁଳରେ
କଳଙ୍କ ରଖି ଭୁବନେ !
ଯାଅ ଯାଅ ବୀର ! ପ୍ରବେଶ ସମରେ
ଯେଣ ଏହି ଖଡ଼ଗ ଜଣ,
ମାତୃ ନାମ ମୁଖେ ଉଚ୍ଚାରି ଉଚ୍ଚାରି
ପ୍ରାଣ ଦିଅ ବିସର୍ଜନ ।”
ଏହା କହି ରାଣୀ କଟିରୁ କାଢ଼ିଲେ
ଶାଣିତ ଛୁରିକା ବଳେ,
ମାତୃ ନାମ ଗାଇ ପ୍ରହାରି ବକ୍ଷେ ଲେ
ଢଳି ପଡ଼ିଲେ ସେ ତଳେ ।

# ଅଷ୍ଟମ ତରଙ୍ଗ

କଏ କାହିଁ ଅଛ          ଭାରତ ଭଗିନୀ
ଧାଇଁ ଆସ ଲୋ ବହିନେ,
ରକ୍ତ ଅପଘନେ          ପଞ୍ଚଛନ୍ତ୍ର ଦେବୀ
ଦେଖିବ ବେଣ ନୟନେ ।
କି ଦେଖୁଛ ଆଜ          ଅମରଗଣ ହେ
କାଞ୍ଚନ ବିମାନେ ବସି,
ଦୁର୍ଗାବତୀ ନାମେ          ସଞ୍ଚ ପାରିଜାତ
ଆନନ୍ଦେ ଦିଅ ବରଷି ।
ଅର୍ଘ୍ୟଥାଳୀ କରେ          ଆସ ଲୋ ଭଗିଣି !
ବନ୍ଦିବା ଚରଣେ ସତୀ,
ସମସ୍ୱରେ ଥରେ          କରୁଣେ ଗାଇବା
**ଜୟ ରାଣୀ ଦୁର୍ଗାବତୀ ।**

---

Printed by M. Kar, at the Utkal Sahitya Press, Cuttack.

# ଶୁଦ୍ଧିପତ୍ର ।

| ପୃଷ୍ଠା | ପଙ୍କ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୫ | ୧୯ | ପ୍ରଦର୍ଶ | ପ୍ରଦ |
| ଅସ୍ବକଥା | ୧୭ | ବାକ୍ୟଭୂଷଣ | ବଦ୍ୟାଭୂଷଣ |
| ୨୦ | ୧୯ | ବନ୍ଧ | ବନ୍ଧୁ |
| ୩୨ | ୩ | ଉନ୍ମକ୍ତ | ଉନ୍ମୁକ୍ତ |
| ୩୯ | ୧ | ବନ୍ଧି | ବନ୍ଧୁ |
| ୪୪ | ୮ | ଝୁଣ | ଝୁଣ୍ଣ |
| ୪୫ | ୩ | ସଦା | ସୁଦ୍ଧା |
| ୪୮ | ୩ | ମାଳ | ମାଳେ |
| ୪୯ | ୭ | ମଖ | ମୁଖେ |
| ୫୩ | ୯ | ହୁଦସ୍ଥ | ହୃଦସ୍ଥେ |
| ୬୫ | ୮ | ଭାସିଲେ | ଭାଷିଲେ |
| ୭୦ | ୧୫ | ନସ୍ବନ | ନସ୍ବନ୍ |
| ୭୬ | ୫ | ନନ୍ଦନ । | ନଳିନୀ ! |
| ୭୯ | ୧୬ | ପୋଡ଼ଛନ୍ତି | ପୋଡୁଛନ୍ତି |
| ୮୫ | ୧୫ | ବିଶ୍ବାସ | ବିଶ୍ବାସେ |
| ୯୨ | ୭ | ମଖେ | ମୁଖେ |
| ୯୬ | ୫ | ଶୁଦ୍ଧି | ଯୁଦ୍ଧି |
| ୯୬ | ୧୧ | ଛର | ଧାର |
| ୯୯ | ୩ | ଝଲ୍କଛି | ଝୁଲ୍କଛି |
| ୧୦୮ | ୧୯ | ପୃଷ୍ଠ | ପୃଷ୍ଠୁ |
| ୧୧୪ | ୧୬ | ସମ୍ମଖେ | ସମ୍ମୁଖେ |
| ୧୧୮ | ୧୫ | ଅଦ୍ଭତ | ଅଦ୍ଭୁତ |
| ୧୨୨ | ୧ | ଫୁଲ୍ ଫଲ୍ | ଫୁଲ୍ ଫୁଲ୍ |
| ୧୨୪ | ୧୫ | ଯାଚତ | ଯାବତ |
| ୧୨୫ | ୧୯ | ଖଡ଼ | ଖଡ୍ଗ |
| ୧୨୭ | ୧୮ | ତୀକ୍ଷ | ତୀକ୍ଷ୍ଣ |

—ঃ—